# ଜଗନ୍ନାଥ ପ୍ରସାଦ:
# ବନ୍ଧୁତାର ଆସର

ସଂ କ ଳ ନ
ଗଣେଶ୍ୱର ମିଶ୍ର



timepass

ଜଗନ୍ନାଥ ପ୍ରସାଦ: ବନ୍ଧୁତାର ଆସର
ଗଣେଶ୍ୱର ମିଶ୍ରଙ୍କ ସଂକଳନ

ପ୍ରକାଶକ : ଟା ଇ ମ୍ ପା ସ୍

ପ୍ରଥମ ସଂସ୍କରଣ : ସେପ୍ଟେମ୍ବର ୨୦୧୩



jagannath prasad: bandhutara asara
compiled by **ganeswar mishra**

published & printed by **timepass**
950 (P), nk marg, baramunda, bhubaneswar, odisha, india

cover design : **saroj bal**
first edition : september 2013

**₹ 80.00**

# ସୂଚନା

ଜଗନ୍ନାଥ ପ୍ରସାଦ ଦାସ (ଜନ୍ମ- ୧୯୩୬) ଭାରତର ଅନ୍ୟତମ ପ୍ରମୁଖ କବି, ଲେଖକ ତଥା କଳା ସମାଲୋଚକ। ସେ ଲେଖନ୍ତି ଓଡ଼ିଆରେ; କିନ୍ତୁ ତାଙ୍କର ପ୍ରାୟ ସମସ୍ତ କୃତି ଇଂରାଜୀ ଓ ବିଭିନ୍ନ ଭାରତୀୟ ଭାଷାରେ ଅନୂଦିତ। ତେଣୁ ସର୍ବଭାରତୀୟ କ୍ଷେତ୍ରରେ ସେ ଏକ ପରିଚିତ ସାରସ୍ୱତ ବ୍ୟକ୍ତିତ୍ୱ। ସାହିତ୍ୟ କୃତି ପାଇଁ ସେ ରାଜ୍ୟ ଓ ଦେଶର ବହୁ ପୁରସ୍କାର ଓ ସମ୍ମାନ ଲାଭ କରିଛନ୍ତି। ଓଡ଼ିଶାର ପଟଚିତ୍ର ଉପରେ ତାଙ୍କର ପଥିକୃତ ଗବେଷଣା ତାଙ୍କୁ ଜଣେ ଗବେଷକ ଭାବରେ ପ୍ରତିଷ୍ଠା ଆଣି ଦେଇଛି- ତେବେ ବଡ଼କଥା ହେଲା, ତାଙ୍କର ଗବେଷଣାର ପରିଣାମ ହୋଇଛି ଜାତୀୟ ଓ ଆନ୍ତର୍ଜାତିକ କ୍ଷେତ୍ରରେ ପଟଚିତ୍ର- ବା ବ୍ୟାପକ ଅର୍ଥରେ- ଓଡ଼ିଶାର ପାରମ୍ପରିକ ଚିତ୍ରକଳାର ଆଦର ଓ ସ୍ୱୀକୃତି।

ସାହିତ୍ୟ ଓ ଚିତ୍ରକଳାରେ ଗବେଷଣା ବ୍ୟତୀତ ସେ ନିଜେ ମଧ୍ୟ ଚିତ୍ରଶିଳ୍ପୀ। ଭାରତର ଶିଶୁ ଚଳଚ୍ଚିତ୍ରର ବିକାଶରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ସୁବିଦିତ।

୧୯୮୪ରେ ଜଗନ୍ନାଥ ପ୍ରସାଦ ଭାରତୀୟ ପ୍ରଶାସନ ସେବା (ଆଇଏଏସ୍)ରୁ ସ୍ୱେଚ୍ଛାରେ ଅବ୍ୟାହତି ନେଇ ନିଜର ସମସ୍ତ ସମୟ ଓ ଶକ୍ତି ସାହିତ୍ୟ, କଳା ତଥା ସାଂସ୍କୃତିକ କାର୍ଯ୍ୟରେ ନିୟୋଜିତ କରିଆସିଛନ୍ତି। କ୍ୱଚିତ୍ ବ୍ୟକ୍ତି ଏଭଳି କରିପାରିଛନ୍ତି ବୋଲି ମନେହୁଏ।

ଏ ପୁସ୍ତକରେ ଜଗନ୍ନାଥ ପ୍ରସାଦଙ୍କ ସାହିତ୍ୟ ବା କଳାକୃତିର ଆଲୋଚନା କରାଯାଇନାହିଁ। ଏହା ପୂର୍ବରୁ ତାଙ୍କ ସଂପର୍କରେ ମୋ ଲିଖିତ 'ଜଗନ୍ନାଥ ପ୍ରସାଦ: ସୃଜନ ଯାତ୍ରା' (ବିଦ୍ୟାପୁରୀ, ୨୦୧୦) ଏବଂ ମୋ ସଂପାଦିତ 'ୱର୍ଡ଼ସ୍ ଅନ୍ କ୍ୟାନ୍‌ଭାସ୍: ଜେପି ଦାସ ଆଣ୍ଡ୍ ହିଜ୍ ୱାର୍କ୍' (ନୂଆଦିଲ୍ଲୀ, ୨୦୦୫) ପ୍ରକାଶିତ ହୋଇଛି। ଆଗ୍ରହୀ ପାଠକ ଓ ଗବେଷକମାନେ ସେ ଦୁଇଟି ପୁସ୍ତକ ପାଠକଲେ ଜଗନ୍ନାଥ ପ୍ରସାଦଙ୍କ ସାହିତ୍ୟ ଓ କଳାକୃତି ସଂପର୍କରେ ସମ୍ୟକ୍ ଧାରଣା କରିପାରିବେ ବୋଲି ମୋର ବିଶ୍ୱାସ।

ଉପରୋକ୍ତ ପୁସ୍ତକ ଦୁଇଟିର ପ୍ରଣୟନ ସମୟରେ ମୁଁ ଜଗନ୍ନାଥ ପ୍ରସାଦଙ୍କ ସଂପର୍କରେ ବହୁ ତଥ୍ୟ ସଂଗ୍ରହ କରିଥିଲି। ସମସ୍ତ ତଥ୍ୟ ପୁସ୍ତକ ଦୁଇଟିରେ ବ୍ୟବହାର କରିବାର ସୁଯୋଗ ନଥିଲା। ଜଗନ୍ନାଥ ପ୍ରସାଦଙ୍କର କେତେକ ବନ୍ଧୁ ତଥା ସହକର୍ମୀ ତାଙ୍କ ସଂପର୍କରେ ଲେଖିଥିବା କେତୋଟି ରଚନା ଏ ପୁସ୍ତକରେ ସଂକଳିତ ହୋଇଛି ମାତ୍ର। ଛାତ୍ର, ଗବେଷକ, ପ୍ରଶାସକ, ସାରସ୍ୱତ ସାଧକ ଭାବରେ ଯେତେ ନୁହେଁ, ଜଣେ ବ୍ୟକ୍ତି ବା ବନ୍ଧୁ ଭାବରେ ତାଙ୍କୁ ଏ ରଚନାଗୁଡ଼ିକରେ ଉପସ୍ଥାପିତ କରାଯାଇଛି। ପୁସ୍ତକଟି ହୁଏତ ଜଗନ୍ନାଥ ପ୍ରସାଦଙ୍କ ଜୀବନର ଏକ ଆଭାସ ଚିତ୍ର; ତାଙ୍କ ସୃଜନସତ୍ତାର ପଛଭୂମି।

'ଜଗନ୍ନାଥ ପ୍ରସାଦ: ସୃଜନ ଯାତ୍ରା' ଓ 'ୱର୍ଡ଼ସ୍ ଅନ୍ କ୍ୟାନ୍‌ଭାସ୍'ର ପରିଶିଷ୍ଟ ଭାବରେ 'ଜଗନ୍ନାଥ ପ୍ରସାଦ: ବନ୍ଧୁତାର ଆସର'କୁ ଗ୍ରହଣ କରାଯାଇପାରେ।

**ଗଣେଶ୍ୱର ମିଶ୍ର**

୧୪.୦୬.୨୦୧୩

ଜଗନ୍ନାଥ ପ୍ରସାଦ:
ବନ୍ଧୁତାର ଆସର

# ଆମର ପିଲାଦିନ

## ମୁରଲୀଧର ଶତପଥୀ

ଜଗନ୍ନାଥ ପ୍ରସାଦ ଦାସ (ଯାହାଙ୍କୁ ମୁଁ ପିଲାଦିନୁ 'ଜଗନା' ବୋଲି ଡାକି ଆସୁଛି) ମୋର ବାଲ୍ୟବନ୍ଧୁ। ଆମର ପରିଚୟ ୧୯୪୩ ମସିହାରୁ। ବାଣପୁର ହାଇସ୍କୁଲ୍‌ରେ ମୋର ବାପା ଓ ଜଗନ୍ନାଥର ବାପା ଶିକ୍ଷକ ଥିଲେ। ଆମେ ପାଖାପାଖି ଘରେ ରହୁଥିଲୁ ଏବଂ ଏକା ଶ୍ରେଣୀରେ ପଢୁଥିଲୁ। ଏକାଠି ପଢ଼ିବା, ଏକାଠି ଖେଳିବା ଓ ଏକାଠି ବୁଲିଯିବା ଆମର ଦୈନନ୍ଦିନ ଧରାବନ୍ଧା ରୁଟିନ ଭଳି ହୋଇଯାଇଥିଲା।

ପିଲାଦିନରୁ ହିଁ ଜଗନ୍ନାଥର ପ୍ରତିଭା ଜଣାପଡୁଥିଲା। ମୋର ମନେ ଅଛି, ଥରେ ଆମ ଶ୍ରେଣୀର ହାତଲେଖା ପତ୍ରିକାରେ ପଣ୍ଡିତ ମଦନ ମୋହନ ମାଲବ୍ୟଙ୍କର ଗୋଟିଏ ସୁନ୍ଦର ଚିତ୍ର ଜଗନ୍ନାଥ ଆଙ୍କିଥିଲା। ପେନ୍‌ସିଲ୍‌ରେ ଅଙ୍କା ହୋଇଥିବା ସେ ଚିତ୍ରଟି ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ। କ୍ଲାସ୍‌ରେ ପ୍ରଥମ ହେବା ସହିତ ଛୋଟ କବିତା ଲେଖିବା ଓ ପେନ୍‌ସିଲ୍‌ରେ ଛୋଟ ଛୋଟ ଚିତ୍ର ଆଙ୍କିବା ଜଗନ୍ନାଥର ପିଲାଦିନରୁ ହିଁ ସଉକ୍ ଥିଲା। ଆଜି ତାର ପ୍ରତିଭା ସାରା ଦେଶରେ ପ୍ରସିଦ୍ଧି ଓ ସ୍ୱୀକୃତି ଲାଭ କରିଛି।

ବୋଧହୁଏ ୧୯୪୮ ମସିହାରେ ଜଗନ୍ନାଥ ବାଣପୁର ଛାଡ଼ି କଟକ ମିଶନ୍ ସ୍କୁଲ୍‌ରେ ପଢ଼ିବାକୁ ଗଲା। କିନ୍ତୁ ଛୁଟି ହେଲେ, ବିଶେଷ କରି ଦଶହରା ଓ ଗ୍ରୀଷ୍ମଛୁଟିରେ ବାପାଙ୍କ ସହିତ ଜଗନ୍ନାଥ ବାଣପୁର ଆସୁଥିଲା। ସେତେବେଳେ ଆମେ ଦୁହେଁ ପ୍ରତିଦିନ ସକାଳ ଓ ଉପରବେଳା ବୁଲିବାକୁ ଯାଉଥିଲୁ। ସ୍ୱର୍ଗୀୟ

ପଣ୍ଡିତ ବିନାୟକ ମିଶ୍ର (କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଅଧ୍ୟାପକ ଥିଲେ) ଆମ ଘର ପାଖରେ ରହୁଥିଲେ। ତାଙ୍କର ଘର ଥିଲା ଠିକ୍ ମୁଖ୍ୟ ରାସ୍ତା ଉପରେ। ସେ ମଧ୍ୟ ଛୁଟିରେ ଆସି ବାଣପୁରରେ ରହୁଥିଲେ। ଯଦିଓ ସେ ଆମ ଦୁହିଙ୍କୁ ଆନ୍ତରିକ ଶ୍ରଦ୍ଧା କରୁଥିଲେ, ଆମେ କିନ୍ତୁ ତାଙ୍କୁ ଡରୁଥିଲୁ। ବୁଲି ଗଲାବେଳେ ଆମ ଦୁହିଙ୍କୁ ଦେଖିବା ମାତ୍ରେ ପଣ୍ଡିତ ମିଶ୍ର ବିଭିନ୍ନ ବିଷୟରେ (ବିଶେଷ କରି ସାହିତ୍ୟ ଓ ଇତିହାସ ଉପରେ) ପ୍ରଶ୍ନ ପଚାରୁଥିଲେ। ମୋର ମନେ ଅଛି, ଥରେ ସେ ଆମକୁ ନିକଟସ୍ଥ ଭାଲେରୀ ପର୍ବତ ଉପରେ ମୁହେଁ ମୁହେଁ ପ୍ରବନ୍ଧ ରଚନା କରିବାକୁ କହିଲେ। ଭାଲେରୀ ପର୍ବତ ବାଣପୁରର ପୂର୍ବରେ ଓ ଆମେ ରହୁଥିବା ଜାଗାରୁ ସ୍ପଷ୍ଟ ଦେଖାଯାଉଥାଏ। ଆଉଥରେ ସେ ସଂଧ୍ୟାବେଳର ଦୃଶ୍ୟ ତତ୍କ୍ଷଣାତ୍ ବର୍ଣ୍ଣନା କରିବାକୁ କହିଲେ। ତାଙ୍କର ସବୁ ପ୍ରଶ୍ନର ଉତ୍ତର ପ୍ରାୟ ଜଗନ୍ନାଥ ଦେଉଥିଲା ଓ ମୁଁ ଅଳ୍ପକେ ଖସିଯାଉଥିଲି। ତା ପରଠାରୁ ଆମେ ଦୁହେଁ (ଆମର ପିଲାଳିଆ ବୁଦ୍ଧିରେ) ପଣ୍ଡିତ ମିଶ୍ରଙ୍କ ଦୃଷ୍ଟିକୁ ଆଡେଇବା ପାଇଁ ମୁଖ୍ୟ ରାସ୍ତାରେ ନ ଯାଇ ଅନ୍ୟ ରାସ୍ତା ଦେଇ ବୁଲିବାକୁ ଗଲୁ।

ଆଜି ସେ ସବୁ ପିଲାଦିନର କଥା ମନେ ପଡିଲେ ରୋମାଞ୍ଚ ଜାତ ହୁଏ।

ସମୟକ୍ରମେ ଆମେ ଭିନ୍ନ ଭିନ୍ନ କଲେଜ୍‌ରେ ପଢ଼ିଲୁ ଓ ଭିନ୍ନ ଭିନ୍ନ ବୃତ୍ତି ଆଦରିଲୁ। ମୁଁ ଜଣେ ଇଞ୍ଜିନିଅର ହେଲି ଏବଂ ଜଗନ୍ନାଥ ସର୍ବଭାରତୀୟ ଶାସନ ସେବାରେ ଯୋଗ ଦେଲା। ଆମ ଦହିଙ୍କର ପୁଣି ଦେଖା ହେଲା ୧୯୬୫ ମସିହାରେ ଭବାନୀପାଟଣା ସହରରେ। ଜଗନ୍ନାଥ ଥାଏ କଳାହାଣ୍ଡି ଜିଲ୍ଲାର କଲେକ୍ଟର। ସେ ସମୟରେ ଉତ୍କଟ ମରୁଡି ଯୋଗୁ ସମଗ୍ର କଳାହାଣ୍ଡି ଜିଲ୍ଲାରେ ଦୁର୍ଭିକ୍ଷ ପଡିଥାଏ। ଖାଦ୍ୟାଭାବ ଓ ଜଳାଭାବ ଯୋଗୁ ମଣିଷ ଓ ଗୃହପାଳିତ ପଶୁ ଉଚ୍ଛନ୍ନ ହେଉଥାନ୍ତି। ଜିଲ୍ଲାର ମୁଖ୍ୟ ଅଧିକାରୀ ଭାବେ ଜଗନ୍ନାଥ ଉଚ୍ଚକୋଟୀର ନେତୃତ୍ୱ ଓ କାର୍ଯ୍ୟଦକ୍ଷତା ଦେଖାଇଥିଲା। ବିଭିନ୍ନ ସ୍ତରୀୟ ଅଧିକାରୀମାନଙ୍କୁ ଉତ୍ସାହ ଓ ପ୍ରେରଣା ଦେଇ ସେହି ଭୟଙ୍କର ପରିସ୍ଥିତିକୁ ମୁକାବିଲା କରିବାରେ ଜିଲ୍ଲା ପ୍ରଶାସନ ସଫଳ ହୋଇଥିଲା। ଆଶ୍ଚର୍ଯ୍ୟର କଥା, ଏହି ଦୁର୍ଭିକ୍ଷର ୩୫ ବର୍ଷ ପରେ ଅର୍ଥାତ୍ ଗତ ୨୦୦୦ ମସିହାରେ କଳାହାଣ୍ଡି ବାସିନ୍ଦା ମୋର ଜଣେ ପୁରାତନ ବନ୍ଧୁ କହିଥିଲେ ଯେ 'ଶ୍ରୀ ଜେ.ପି. ଦାସଙ୍କ ପରି ଆଉ କେହି କଲେକ୍ଟର କଳାହାଣ୍ଡିକୁ ଆସିନାହାନ୍ତି।'

ଜଗନ୍ନାଥ ସଙ୍ଗରେ ପୁଣି ଯୋଗାଯୋଗ ହେଲା ସତୁରୀ ଦଶକରେ ଆଦ୍ୟ ଭାଗରେ। ଜଗନ୍ନାଥ ନିର୍ମାଣ ବିଭାଗର ସର୍ବୋଚ୍ଚ ଅଧିକାରୀ (ସେକ୍ରେଟାରୀ) ହୋଇ

ଯୋଗ ଦେଲା । ମୁଁ ସେହି ବିଭାଗ ଅଧୀନରେ ଚାକିରୀ କରୁଥିଲି । ଯାହା ସଚରାଚର ହୋଇଥାଏ ଯେ ତଳିଆ ଅଧିକାରୀମାନେ ସର୍ବୋଚ୍ଚ ଅଧିକାରୀଙ୍କର ଗୁଣାବଳୀ ବା ଦୋଷ ତୃଟି ସୁଯୋଗ ପାଇଲା ମାତ୍ରେ ଆଲୋଚନା କରନ୍ତି । କିନ୍ତୁ ମୁଁ ଗର୍ବର ସହିତ କହୁଛି ଯେ ମୋର ବନ୍ଧୁ ଜଗନ୍ନାଥ ସବୁ ଇଞ୍ଜିନିୟରଙ୍କ ପ୍ରଶଂସା ଓ ସମ୍ମାନର ପାତ୍ର ହୋଇଥିଲା ।

**ଅବସରପ୍ରାପ୍ତ ଚିଫ୍ ଇଞ୍ଜିନିଅର, ଭୁବନେଶ୍ୱର**

# ଛୋଟ ଦିନରୁ

**ଗଣେଶ୍ୱର ଦାସ**

ପରିଚୟ ଅତି ଛୋଟ ଦିନରୁ। ସେ ଆମ ଘରେ ନଚେତ୍ ମୁଁ ତାଙ୍କ ଘରେ। ନିଜର କିଛି ପ୍ରତିଭା ନ ଥିଲେ ବି ପ୍ରତିଭାକୁ ଆଦର କରି ଜାଣିଥିଲି। ତେଣୁ ଦୁହିଙ୍କ ବନ୍ଧୁତ୍ୱର ରାସ୍ତାରେ କିଛି ବାଧା ଉପୁଜି ନଥିଲା। ଘର ଏକବାରେ ପାଖାପାଖି। ମାଟ୍ରିକ୍ ପରୀକ୍ଷାର କୃତିତ୍ୱ ହିଁ ତାଙ୍କର ପ୍ରଥମ ପରିଚୟ ପ୍ରଦାନ କରିଥିଲା ମତେ। କାହିଁକି କେଜାଣି ଗୋଟିଏ ଦୃଷ୍ଟାନ୍ତରୁ ଆବୈଜ୍ଞାନିକ ଆରୋହାନୁମାନର ଆରୋହଲମ୍ଫନ ବଳରେ ତାଙ୍କର ସମସ୍ତ ଗୁଣର ଉତ୍କର୍ଷ ବିଷୟକ ସିଦ୍ଧାନ୍ତରେ ପହଞ୍ଚିଗଲି। ତର୍କଶାସ୍ତ୍ରର ନିୟମ ଲଂଘନ କରାଯାଇ ପାରିଥାଏ, କିନ୍ତୁ ହୃଦୟର ପବିତ୍ର ଅନାବିଳ ନିୟମ ଯେଉଁ ସିଦ୍ଧାନ୍ତରେ ପହଞ୍ଚାଇବ, ତାହା ତର୍କଶାସ୍ତ୍ର ନିୟମଠାରୁ ଅଧିକ ଗ୍ରହଣଯୋଗ୍ୟ। ମୁଁ ତାଙ୍କୁ ଖୁବ୍ ଭଲ ପାଇଗଲି। ଛୋଟ ପିଲାଟିର ସବୁଗୁଣ ମତେ ଭଲ ଲାଗିଲା। ତାଙ୍କ ବାପା ଥିଲେ ବିଜ୍ଞ, ବିଦ୍ୱାନ୍ ଅଧ୍ୟାପକ ପଣ୍ଡିତ ଶ୍ରୀଧର ଦାସ। ବିଦ୍ୟା ଆହରଣ ଓ ବିଦ୍ୟାଦାନ ପ୍ରତି ଏତେ ଶ୍ରଦ୍ଧା, ଏତେ ଆକର୍ଷଣ- ମତେ ମନ୍ତ୍ରମୁଗ୍ଧ କରି ଦେଇଥିଲା। ଦାଣ୍ଡ ଘର ସାରା ବହି ଖାତା ବିଛା ହୋଇ ପଡିଥାଏ। ବହିମାନଙ୍କ ସାଙ୍ଗରେ ଅନେକ ସମୟ କଟାନ୍ତି ସାର୍। ଇଚ୍ଛା ହୁଏ ବହିପତ୍ର ସବୁ ସଜାଡି ଦିଅନ୍ତି। କିନ୍ତୁ ଜଗନ୍ନାଥ ବାରଣ କରନ୍ତି, କାରଣ ଥରେ ସଜାଡି ଦେଲେ ବାପାଙ୍କ ତପସ୍ୟାରେ ବିଘ୍ନ ସୃଷ୍ଟି ହେବ।

ସାର୍ ସଂଧ୍ୟାରେ ବୁଲିଗଲା ବେଳେ ମତେ ଓ ଜଗନ୍ନାଥକୁ ସାଙ୍ଗରେ ନିଅନ୍ତି।

ଗପ ଛଳରେ କେତେ ପାଠ ଆଲୋଚନା କରିଯାଆନ୍ତି, ସାର୍‌ଙ୍କୁ ବେଶୀ ବେଶୀ ଜାଣୁଥାଏ। ଜଗନ୍ନାଥଙ୍କୁ ଯେତେ ଜାଣିଲେ ବି ସେତେ ଅଜଣା ରହିଯାଉଥିବା ପରି ମନେ ହେଉଥାଏ। ସେଦିନ ତାଙ୍କ ଦାଣ୍ଡ ଝରକା ବାଟେ ଅନାଇ ଦେଖିଲି ସେ କଣ ଲେଖିବାରେ ବ୍ୟସ୍ତ। କଣ ଲେଖୁଛି ଜାଣି ପାରିଲି ନାହିଁ, ଘରକୁ ଫେରି ଆସିଲି। କିଛି ସମୟ ପରେ ସେ ମୋ ପାଖକୁ ଆସି ନିଜେ ଲେଖିଥିବା ଗୋଟିଏ କବିତା ଦେଖାଇଲେ। ଅନେକ ଦିନ ପର୍ଯ୍ୟନ୍ତ ସେ କବିତାଟିକୁ ସାଇତି ରଖିଥିଲି, କିନ୍ତୁ ଜୀବନର ଝଡ ଝଞ୍ଜା ଭିତରେ ସେ ମୂଲ୍ୟବାନ ସମ୍ପଦଟିକୁ ହରାଇ ବସିଲି। ପରେ ପରେ ବହୁତ କବିତା ସେ ଲେଖିଥିଲେ । ସେ କବିତାଗୁଡ଼ିକ ପଢ଼ିବାରେ ବହୁତ ଆନନ୍ଦ ମିଳୁଥିଲା। ଯେଉଁ କବିତା ଉନ୍ମାଦନା ସୃଷ୍ଟି କରେ, ଯେଉଁ କବିତାକୁ ବଡ ପାଟିରେ ପଢ଼ିଲେ ଦେହରେ ଶିହରଣ ଖେଳିଯାଏ, ଅର୍ଥରେ କ୍ଲିଷ୍ଟତା ନ ଥାଏ, ସେମିତି କବିତା।

ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ବାର୍ଷିକ ବିଷୁବ ମିଳନର ଆୟୋଜନ କରୁଥିଲେ ଡକ୍ଟର ହରେକୃଷ୍ଣ ମହତାବ। ଓଡ଼ିଶା ବାହାରୁ ପ୍ରଖ୍ୟାତ ସାହିତ୍ୟିକମାନଙ୍କୁ ଅତିଥି କରି ଅଣା ଯାଉଥିଲା। ସାହିତ୍ୟିକମାନଙ୍କୁ ନିଜ ନିଜର ସାଧନା ପାଇଁ ସମ୍ମାନିତ ଓ ପୁରସ୍କୃତ କରିବାର ପରମ୍ପରା ଓଡ଼ିଶାରେ ପ୍ରଥମ କରି ସୃଷ୍ଟି କରାଗଲା ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ। ବିଶିଷ୍ଟ ବକ୍ତାମାନଙ୍କ ଭିତରେ ବାଳକ ଜଗନ୍ନାଥ ମଧ୍ୟ ସ୍ଥାନ ପାଉଥିଲେ। ପିଲାଦିନୁ ସେଇ ଅଭ୍ୟାସ- ଅଳ୍ପ କହିବେ, ଭଲ କହିବେ। ତାଙ୍କର ଭାଷଣ, ସ୍ୱରଚିତ କବିତା ଆବୃତି, କ୍ଷୁଦ୍ରଗଳ୍ପ ପ୍ରଭୃତି ପାଇଁ ପୁରସ୍କାର ଲାଭ ଇତ୍ୟାଦିରେ ମୁଁ ଆଶ୍ଚର୍ଯ୍ୟ ହୋଇ ପଡୁଥିଲି। ମୋର ଓ ଜଗନ୍ନାଥ ଉଭୟଙ୍କର ଲେଖା ପ୍ରଜାତନ୍ତ୍ରର ମୀନାବଜାରରେ ପ୍ରକାଶ ପାଉଥିଲା । କି ଆନନ୍ଦ, କି ଉତ୍ସାହ ସେତେବେଳେ ! ପ୍ରସିଦ୍ଧ ସାହିତ୍ୟିକମାନଙ୍କ ଗହଣରେ ସେ ବି ପୁରସ୍କୃତ ହେଉଥିଲେ, ସେ ଥିଲେ ମୋ ପାଇଁ ଉତ୍ସାହର ଉତ୍ସ। ମୁଁ ବି କିଛି କିଛି ଲେଖାଲେଖି କଲି। ଜଗନ୍ନାଥଙ୍କ ଉପରେ ଲିଖିତ ମୋର କ୍ଷୁଦ୍ରଗଳ୍ପ 'ବିଷୁବର ଲେଖକ' ବିଷୁବ ମିଳନ ବିଶେଷାଙ୍କରେ ପ୍ରକାଶ ପାଇଥିଲା।

ଆମ ଘରକୁ 'ସମାଜ' ନିୟମିତ ଭାବରେ ଆସୁଥିଲେ ବି ଜଗନ୍ନାଥଙ୍କର କବିତାମାନ ପ୍ରକାଶ ପାଉଥିବା 'ପ୍ରଜାତନ୍ତ୍ର' ପ୍ରତି ମୋର ଆଗ୍ରହ ବଢ଼ିଲା। ଏପରିକି ୧୯୫୩ ମସିହା ଜୁଲାଇ ମାସ ବେଳକୁ ମୁଁ ଏମ୍.ଏ. ପଢ଼ିବା ଲାଗି ବନାରସ ଗଲା ବେଳେ ବନାରସ୍‌କୁ ନିୟମିତ ପ୍ରଜାତନ୍ତ୍ର ପଠାଇବା ଲାଗି ବନ୍ଦୋବସ୍ତ

କରିଯାଇଥାଏ। ୧୯୫୩ ମସିହାରେ ଜଗନ୍ନାଥଙ୍କର ଅନେକଗୁଡିଏ କବିତା ପ୍ରଜାତନ୍ତ୍ରରେ ପ୍ରକାଶ ପାଇଥାଏ।

ଶାରୀରିକ ଅସୁସ୍ଥତା ଏବଂ ତତ୍‌ଜନିତ ପାଠ ପଢ଼ାରେ କ୍ଷତି ମୋ ମନବଳକୁ ଭାଙ୍ଗି ଦେଇଥାଏ। ଏମିତି ବି ପ୍ରକୃତିଗତ ମୁଁ ନୈରାଶ୍ୟବାଦୀ ଥିଲି। ଜଗନ୍ନାଥ ମତେ ବହୁତ ବୁଝାନ୍ତି। ବଞ୍ଚିରହିବାର ଆଲୋକକୁ ଦେଖାଇବା ପାଇଁ ଚେଷ୍ଟା କରନ୍ତି। ଠିକ୍ ସେତିକିବେଳେ ପ୍ରଜାତନ୍ତ୍ରରେ ପ୍ରକାଶିତ ତାଙ୍କର କବିତା 'କର ନାଇଁ ଆଉ ଶୋଚନା' ମୋ ମନରେ କିଛିଟା ଆଶାର ସଞ୍ଚାର କରି ପାରିଥିଲା। ସେ କବିତାଟିର ପ୍ରତ୍ୟେକ ଧାଡି ମୋ ପାଇଁ ଶାନ୍ତିର ବାର୍ତ୍ତା ପହଞ୍ଚାଉଥାଏ।

ମରଣଭୀତ ହେ ଆଖି ଖୋଲି ଦେଖ ଜୀବନ ସେ, ନୁହେଁ ମରଣ
ହତାଶାର ତଳେ ଆଶାର ରହିଚି ସୂଚନା
ବେଦନାସିକ୍ତ ବନ୍ଧୁ ହେଁ ତେଣୁ କର ନାହିଁ ଆଉ ଶୋଚନା।

**ଅବସରପ୍ରାପ୍ତ ଅଧକ୍ଷ, ଓଡ଼ିଶା ଶିକ୍ଷା ସେବା**
**(ସଂସ୍କରଣ-୨୦୦୭ରୁ ଗୃହୀତ)**

# ଜୀବନରେ ଚଲାପଥେ

## ପଠାଣି ପଟ୍ଟନାୟକ

ଢିଙ୍କି ସ୍ୱର୍ଗକୁ ଗଲେ ମଧ ଧାନ କୁଟିବ। କଲେଜ ଜୀବନରେ ସାଂସ୍କୃତିକ ଅନୁଷ୍ଠାନ ଗଢ଼ିବାର ଯେଉଁ ନିଶା ଥିଲା, ତାହା ପୁନର୍ବାର ଜାଗ୍ରତ ହୋଇ ଉଠିଲା। ଅଳ୍ପଦିନ ମଧରେ କେତେଜଣ ଉତ୍ସାହୀ ଛାତ୍ରଙ୍କୁ ଏକାଠି କରି ଆରମ୍ଭ କଲି ଅଭ୍ୟୁଦୟ ସାହିତ୍ୟ ସମାଜ। ପ୍ରତ୍ୟେକ ରବିବାର ଅପରାହ୍ନରେ ସତୀଚଉରା ଶ୍ମଶାନ ନିର୍ଜନ ପରିବେଶରେ ଆମର ବୈଠକ ବସୁଥିଲା କୌଣସି ଏକ ବୃକ୍ଷତଳେ ଶୀତ ପରିବେଶରେ। ସାହିତ୍ୟର ବିଭିନ୍ନ ବିଷୟ ଉପରେ ଆଲୋଚା ହୁଏ। ମୋ ସହଯୋଗୀ ଥିଲେ ଅଧାପକ ଶ୍ରୀନିବାସ ମିଶ୍ର। ଯେଉଁ କେତେଜଣ ଉତ୍ସାହୀ ଛାତ୍ର ଏହି ଅନୁଷ୍ଠାନରେ ଯୋଗ ଦେଇଥିଲେ ପ୍ରଥମରୁ, ସେମାନେ ହେଲେ ଜଗନ୍ନାଥ ପ୍ରସାଦ ଦାସ, ସୁଧାଂଶୁ ରାଉତରାୟ, ବିବେକାନନ୍ଦ ଦାଶ, ରାମନାରାୟଣ ହୋତା ଓ କୈଳାଶ ବିହାରୀ ଦାସ। ଏହି ଛାତ୍ରମାନେ ଆଜି ନିଜ ନିଜ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି। ଜଗନ୍ନାଥ ଜଣେ ପ୍ରଥମ ଶ୍ରେଣୀର ଛାତ୍ର ଥିଲେ ଏବଂ ଛାତ୍ର ବୟସରେ ଭଲ କବିତା ଲେଖୁଥିଲେ। ସେ ଥିଲେ ଅଧାପକ ଶ୍ରୀଧର ଦାସଙ୍କର ଜ୍ୟେଷ୍ଠ ପୁତ୍ର।

ବେଳେବେଳେ ଆମର ଏହି ସତୀଚଉରା ବୈଠକକୁ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଓ ଅଧାପକ ଶ୍ରୀଧର ଦାସଙ୍କୁ ନିମନ୍ତ୍ରଣ କରାଯାଉଥିଲା ଭାଷଣ ଦେବା ପାଇଁ।

(ଜନସୁଧା, ଜାନୁଆରୀ ୨୦୦୭)

# ପ୍ରଥମ କବିତାର ପାଠକ

ମହେଶ୍ୱର ମହାନ୍ତି

ମଫସଲ ହାଇସ୍କୁଲରେ ଛାତ୍ର ଥିବାବେଳେ ଭବିଷ୍ୟତରେ କଣ ଗୋଟାଏ ହେବ ବୋଲି କିଛି ଚିନ୍ତା କରି ନ ଥିଲି। ଗପ କବିତା ଲେଖୁଥିଲି, ତାହା ପତ୍ରପତ୍ରିକାରେ ଛପା ହେଉଥିଲା। ସେଇ କାରଣରୁ ସାହିତ୍ୟ ପ୍ରତି ଶ୍ରଦ୍ଧା ଥିଲା। ଶେଷରେ ଏଭଳି ହେଲା, ବୃତ୍ତି ଜୀବନରେ ସାହିତ୍ୟ ପଢ଼ାଇଲି, ପଢ଼ିଲି, ଆଲୋଚନା କଲି। କବି ଲେଖକମାନଙ୍କୁ ଚିହ୍ନିଲି, ଶ୍ରେଣୀ ଗୃହରେ ପିଲାମାନଙ୍କୁ ଚିହ୍ନାଇଲି; ଅଥଚ କିଶୋର ବିୟସରେ ଏଇ କ୍ଷୁଦ୍ର ପ୍ରାଣକୁ ଆଲୋଡ଼ିତ କରିଥିବା ଏବଂ ଅଭିଭୂତ କରିଥିବା ଜଣେ କବିଙ୍କୁ ଖୋଜି ପାଇଲି ନାହିଁ। ଦୀର୍ଘ ୫୦ବର୍ଷ ଧରି ତାଙ୍କର ନୀରବ ଅନ୍ୱେଷଣ କରିଛି, ହେଲେ ସଫଳ ହୋଇପାରି ନାହିଁ। ବେଳେ ବେଳେ ସେ ନାଆଁଟି ଦ୍ୱିତୀୟା ଚାନ୍ଦ ଭଳି ମନରେ ଉଙ୍କିମାରି ପରକ୍ଷଣରେ କେଉଁଆଡେ ଲିଭିଯାଏ। ଆଉ ବେଳେବେଳେ ସେ ପଛପଟୁ ଆସି ମୋର ଦୁଇ କାନ୍ଧରେ ତାଙ୍କ ହାତ ଭରା ଦେଇ କିଶୋର ବୟସରେ ପଢ଼ିଥିବା କବିତାର କେଇପଦ କାନ ପାଖରେ ଗୁଣୁଗୁଣୁ କରି ଗାଇ ଦେଇ, ମୁଁ ବେକ ଭାଙ୍ଗି ପଛକୁ ଚାହିଁ ଦେଲାବେଳକୁ କୁଆଡେ ଲୁଚିଯାଆନ୍ତି। ଏଇଭଳି ଗୋଟିଏ କବିତା ଥିଲା-

ବାଲୁକା ପ୍ରାନ୍ତରେ ତୁମେ ଶାୟିତା କେ ପାଷାଣ ରୂପସୀ
ଯୌବନର ଅଭିଶାପ ଘେନି କିବା ମଞ୍ଜୁଳା ଉର୍ବଶୀ
ଊର୍ଦ୍ଧ୍ୱେ ତବ ଆକାଶର ଶାନ୍ତ ଛବି, ଅବନତ ଧରା
ଜ୍ୟୋତ୍ସ୍ନାସିକ୍ତ ସନ୍ଧ୍ୟାବାଳା ଜ୍ୟୋତ୍ସ୍ନାୟିତ ନଭ ଆତ୍ମହରା।

ମଲାଟରେ ବୋଧହୁଏ କୌଣସି ଛବି ନ ଥିବା ତିନିଅକ୍ଷରବିଶିଷ୍ଟ ଗୋଟିଏ ଛୋଟ ପୁସ୍ତକର ଏଇଟି ଥିଲା ପ୍ରଥମ କବିତା। ପୁସ୍ତକର ନାଆଁ ମନେ ନାହିଁ, କେବଳ କବିଙ୍କର ନାଆଁ ମନେ ଅଛି, ଜଗନ୍ନାଥ ପ୍ରସାଦ ଦାସ। କେଉଁ ଏକ ଉପନ୍ୟାସର କାହାଣୀ ଭଳି ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ମନେ ମନେ ନୀରବରେ ଅନ୍ୱେଷଣ କରିଛି ଏଇ କବିଙ୍କୁ।

ସ୍କୁଲ ଜୀବନରେ ମୋର କେତୋଟି କବିତା କଲିକତାରୁ ପ୍ରକାଶ ପାଉଥିବା ଆସନ୍ତାକାଲିର କିଶୋର ସଂସାର ବିଭାଗରେ ମଝିରେ ମଝିରେ ଛପାଯାଇଥିଲା। ସେଇ ଅବସରରେ ମୁଁ ପ୍ରାୟ ନିୟମିତ ଆସନ୍ତାକାଲି ଖଣ୍ଡିଏ ସଂଗ୍ରହ କରି ପଢୁଥିଲି। ସେଇ ଆସନ୍ତାକାଲିରେ ପ୍ରାୟ ୧୯୫୩/୫୪ ବେଳକୁ ଜଗନ୍ନାଥ ପ୍ରସାଦଙ୍କ ନାମରେ ନିୟମିତ କବିତା ପ୍ରକାଶ ପାଉଥିଲା। ଅସ୍ପଷ୍ଟ ଭାବରେ ସେଥିରୁ ଏବେ ମଧ୍ୟ ଧାଡିଏ ଦୁଇ ଧାଡି ମନେ ଅଛି -

ମତେ ଆଜି ଦୂରେ ଧୂସର ମରୁର
ପାନ୍ଥ ନିବାସ ଡାକେ
ପାନ୍ଥଶାଳାର ମଧୁର ସ୍ୱପ୍ନ ବ୍ୟାକୁଳ କରିଛି ପ୍ରାଣ।
(ଏହି କବିତାର ଶିରୋନାମା ମନେ ନାହିଁ।)

ସେଦିନର ସେଇ କିଶୋର ପ୍ରାଣକୁ ଅଧିକ ଅଭିଭୂତ କରିଥିଲା ଆଉ ଗୋଟିଏ କବିତା, ଯାହାର କିଛି ଅଂଶ ମନେ ପଡୁଛି-

ରକ୍ତର ତଳେ ନାମହୀନ କେଉଁ
ଜୀବାଣୁର ଦଳ ଛୁଟେ
ମଣିଷ ଦେହରୁ ତିଳତିଳ କରି
ରକତ ମାଉଁସ ଲୁଟେ।

ଏ ପଦଟି ମନକୁ ଖୁବ୍ ପାଇ ଯାଇଥିଲା। ମୋର ସ୍ମୃତିଶକ୍ତି ଏତେ ପ୍ରଖର ନୁହେଁ। ଏହାକୁ ପାଠ ଘୋଷିଲା ଭଳି ମୁଖସ୍ଥ କରି ନ ଥିଲି। କିଶୋର ବୟସରେ ବୋଧେ ଏଇଭଳି ମନଛୁଆଁ ଗୀତ ବା କବିତା ବଳେ ବଳେ ମନେ ରହିଯାଏ। ଏଇଭଳି ଆଉ ଗୋଟିଏ ମନଛୁଆଁ କବିତାର କିୟଦଂଶ ହେଉଛି :

ଗର୍ଜେ କମାଣ ଗର୍ଜଇ ପରମାଣୁ
ଧ୍ୱଂସର ମହା ଅଗ୍ନି ତୋଳଇ ଶିଖା
ମଣିଷ କରିଛି ମଣିଷରେ ଆଜି ଦାସ।

ଆଉ ମନେ ପଡୁନାହିଁ। ବୟସ ଆଗେଇ ଯିବା ସଂଗେ ସଂଗେ ସ୍ମୃତି ଦୁର୍ବଳ ହୋଇଯାଉଛି। ଏଇଟି ଆସନ୍ତାକାଲିରେ ଛପାଯାଇଥିଲା କି ସେଇ ତିନି ଅକ୍ଷରିଆ ବହିରେ ଛପାଥିଲା, ମନେ ନାହିଁ।

୫୦ ବର୍ଷ ତଳର ଜଗନ୍ନଥ ପ୍ରସାଦ ଦାସଙ୍କ ନାମଟି ସହିତ ବର୍ତ୍ତମାନର ଜଗନ୍ନାଥ ପ୍ରସାଦଙ୍କୁ ମୁଁ କେବେ ଯୋଡି ପାରି ନ ଥିଲି। ବର୍ତ୍ତମାନର ଜଗନ୍ନାଥ ପ୍ରସାଦଙ୍କୁ ସେତେବେଳେ କେତେ ବର୍ଷ ହୋଇଥିବ କି ? ସେ କଣ ସେତେବେଳକୁ କବି ହେଲେଣି, ତାଙ୍କର ପୁଣି ବହି ଛପାଯିବ ? ସେତେବେଳର ଜଗନ୍ନାଥ ପ୍ରସାଦ ନିଶ୍ଚେ ଜଣେ ବୟସ୍କ ବ୍ୟକ୍ତି ହୋଇଥିବେ, ପରିଯୁକ୍ତ ଚିନ୍ତାଧାରାର ମଣିଷଟିଏ ହୋଇଥିବେ। ସେ କୁଆଡେ ହଜିଗଲେଣି, ତାଙ୍କ ଖବର କେହି ରଖି ନାହାନ୍ତି। ଏଇଭଳି ଏକ ଦୃଢ଼ ନିଶ୍ଚିତ ଭ୍ରମ ଧାରଣା ମନରେ ଘୋଷଣା କରି ତାଙ୍କୁ ସେଇଠି ପରିତ୍ୟାଗ କରିଥିଲି।

ପ୍ରାୟ ଦୁଇ ବର୍ଷ ତଳେ, ମୋର ପ୍ରତିବେଶୀ ଅଧ୍ୟାପକ ପଠାଣି ପଟ୍ଟନାୟକଙ୍କୁ କୌଣସି ଏକ ପ୍ରସଙ୍ଗରେ ଥରେ ଏଇ କଥାଟି ପଚାରିଲି। ସେ ସନ୍ଦେହମିଶ୍ରିତ ସ୍ୱରରେ କହିଲେ, 'ଜଗନ୍ନାଥ ପ୍ରସାଦ ଛାତ୍ରାବସ୍ଥାରେ କବିତା ଲେଖୁଥିଲେ। ହୁଏତ ସେଇ ହୋଇପାରନ୍ତି। ପରବର୍ତ୍ତୀ କାଳରେ ସେ ଆଧୁନିକ କବିତା ଲେଖୁଛନ୍ତି।'

ଏଣିକି ଗୋଟିଏ ସୂତ୍ର ମିଳିଗଲା ଏତେ ଦିନ ପରେ। ନୀରବ ଅନ୍ୱେଷଣ ଅପେକ୍ଷା ଏଇ ପ୍ରଶ୍ନଟି ତାଙ୍କ ଆଗରେ ବହୁ ଆଗରୁ ଥୋଇଥିଲେ ଅଥବା ଟିକିଏ ସାଧାରଣ ଜ୍ଞାନ ଖଟାଇଥିଲେ ହୁଏତ ଏଭଳି ଘନ କୁହୁଡି ଭିତରେ ଏତେକାଳ ରହିବାକୁ ହୋଇ ନ ଥାନ୍ତା । ଜଗନ୍ନାଥ ବାବୁ ପିଲାଦିନୁ କବିତା ଲେଖିଥିଲେ। କିଶୋର ବୟସରେ ତାଙ୍କର ବହି ଛପା ହୋଇଥିଲା ? ବାସ୍, ତା ପର ଘଟଣା ଠିକଣା ଓ ଟେଲିଫୋନ ନମ୍ବର ମୋ ପାଖରେ ନ ଥିଲା। ତାହାକୁ ସଂଗ୍ରହ କଲି ଅନ୍ୟ ସୂତ୍ରରୁ। ମିଳିଗଲା ମୋର ଉତ୍ତର। ସେଇ ତିନି ଅକ୍ଷରବିଶିଷ୍ଟ କବିତା ପୁସ୍ତକର ନାମ ହେଉଛି 'ସ୍ତବକ' । ଜଣେ ସୁଖ୍ୟାତ ଆଧୁନିକ କବି, ଚିତ୍ରକର, ଗବେଷକ, ପ୍ରଥମ ପୁରୁଷ, ଅନ୍ୟ ସବୁ ମୃତ୍ୟୁ, ଯେ ଯାହାର ନିର୍ଜ୍ଜନତା, ଦେଶ କାଳ ପାତ୍ର, ଦିନଚର୍ଯ୍ୟା ଇତ୍ୟାଦି ବହୁ ବହୁ ପୁସ୍ତକର ରଚୟିତା ଜଗନ୍ନାଥ ପ୍ରସାଦ ଦାସ ତେବେ ହେଉଛନ୍ତି ମୋର କିଶୋର ପ୍ରାଣକୁ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଧରି ଆଚ୍ଛନ୍ନ କରି ରହିଥିବା ସେହି 'ସ୍ତବକ' ପୁସ୍ତକର ରଚୟିତା ! ଦୁହେଁ ଏକ ଓ ଅଭିନ୍ନ।

**ଅବସରପ୍ରାପ୍ତ ପ୍ରାଧ୍ୟାପକ, ଖ୍ରୀଏଷ୍ଟ କଲେଜ**

# ଜଣେ ନିଆରା ସ୍ୱାଦର ବନ୍ଧୁ

## ଗୋପାଳ ମିଶ୍ର

ଜଗନ। ଜଗନ୍ନାଥ ପ୍ରସାଦ ଦାସ। ଡକ୍ଟର ଜଗନ୍ନାଥ ପ୍ରସାଦ ଦାସ। ତାଙ୍କ ପିତା ଓ ମୋର ପରମ ପୂଜନୀୟ ଅଧ୍ୟାପକ ଶ୍ରୀଧର ଦାସଙ୍କ ପାଇଁ ତାଙ୍କ ଡାକ ନାମ ଥିଲା ଜଗନ। ସ୍କୁଲ୍ କଲେଜଠାରୁ ଆରମ୍ଭ କରି ସରକାରୀ ପଦପଦବୀରେ ତାଙ୍କର ପଞ୍ଜିକୃତ ନାମ ହେଉଛି, ଜଗନ୍ନାଥ ପ୍ରସାଦ ଦାସ। ପରବର୍ତ୍ତୀ ସମୟର ନିଜର ସୃଜନଶୀଳ ବିଚକ୍ଷଣତା ଓ ଅଧ୍ୟବସାୟ ବଳରେ ସେ ଡକ୍ଟର ଜଗନ୍ନାଥ ପ୍ରସାଦ ଦାସରେ ରୂପାନ୍ତରିତ ହୋଇଥିଲେ। କିନ୍ତୁ ବନ୍ଧୁ ମହଲ ଏବଂ ଜଣାଶୁଣା ସମସ୍ତଙ୍କ ମଧ୍ୟରେ ତାଙ୍କର ପରିଚିତି ଦୁଇଟି ଇଂରାଜୀ ଅକ୍ଷରରେ ସୀମିତ। ତାହା ହେଉଛି ଜେ.ପି.। ଏହି ଦୁଇଟି ଅକ୍ଷରର ସମାରୋହ ଭିତରେ ଏକ ସ୍ୱତନ୍ତ୍ର ଅନ୍ତରଙ୍ଗତା ରହିଛି। ଅନ୍ତତଃ ଆମମାନଙ୍କ ପାଇଁ।

ଜେ.ପି.ଙ୍କ ସହିତ ମୋ ସଂପର୍କ ସେତୁର ମୂଳଦୁଆ ପଡ଼ିଥିଲା ୧୯୫୨-୫୩ ସାଲରେ। ୫୪/୫୫ ବର୍ଷର ସେ ମୂଳଦୁଆ କ୍ରମଶଃ ଦୃଢ଼ରୁ ଦୃଢ଼ତର ହୋଇଛି। ତାଙ୍କର ଅନାସକ୍ତ ବନ୍ଧୁବତ୍ସଳତା ଏବଂ ଆନ୍ତରିକତା ଏପର୍ଯ୍ୟନ୍ତ ଅତୁଟ ରହିଛି। ପେସା ବା ନିଶାର ବୈଷମ୍ୟ ସେଥିରେ କୌଣସି ପ୍ରକାର ଆଞ୍ଚ ଆଣି ନାହିଁ କିମ୍ବା ଆଣିବାର ଆଶଙ୍କା ମଧ୍ୟ ନାହିଁ। ଆହ୍ଲାବାଦରେ ଏମ୍.ଏ. ପାଠ୍ୟକ୍ରମରେ ଯୋଗଦେବା ପୂର୍ବରୁ ଜେ.ପି. ଥିଲେ ରେଭେନ୍ସା କଲେଜର ଛାତ୍ର। ମୁଁ ଥିଲି ଖ୍ରୀଏଷ୍ଟ କଲେଜର ଛାତ୍ର ଏବଂ ତାଙ୍କ ପିତା ଥିଲେ ଖ୍ରୀଏଷ୍ଟ କଲେଜରେ ଆମ ସମସ୍ତଙ୍କର ଆଦରଣୀୟ ଓ ସମ୍ମାନାସ୍ପଦ ଅଧ୍ୟାପକ। କେବଳ ତ ଅଧ୍ୟାପକ ନ ଥିଲେ। ମୋ ବିଚାରରେ

ସେତେବେଳେ ସେ ଥିଲେ ଖ୍ରୀଏଷ୍ଟ କଲେଜର ଭୀଷ୍ମ ପିତାମହ । ସାର୍‌ଙ୍କ ସରଳ ଓ ନିରାଡ଼ମ୍ବର ଜୀବନଶୈଳୀ ଏବଂ ବିଦ୍‌ବତ୍ତା ଆମପିଢ଼ିର ଛାତ୍ରମାନଙ୍କୁ ବିଶେଷ ପ୍ରଭାବିତ କରିଥିଲା । ମୁଁ ମଧ୍ୟ ଟାଣି ହୋଇଯାଇଥିଲି । ସେତେବେଳେ ମୁଁ ଆଉ କେହି କେହି ବନ୍ଧୁ ସାର୍‌ଙ୍କ କଟକ ଡଗରପଡା ବାସଭବନକୁ ନିୟମିତ ଭାବରେ ଯା'ଆସ କରୁଥିଲୁ । ସେହି ସୂତ୍ରରେ ଜେ.ପି.ଙ୍କ ସହିତ ସମ୍ପର୍କର ସୂତ୍ରପାତ ହୋଇଥିଲା । ସେ କୋଉ କାଳର କଥା । ଛାତ୍ର ହିସାବରେ ମୁଁ ଥିଲି ସାଧାରଣ ବର୍ଗର ମୋଟାମୋଟି ପର୍ଯ୍ୟାୟରେ । ଜେ.ପି. କିନ୍ତୁ ଥିଲେ ଅତ୍ୟନ୍ତ ମେଧାବୀ ଓ କୃତୀ ଛାତ୍ର ।

କଲେଜରେ ପଢ଼ିବାବେଳେ ମୋର ଲେଖାଲେଖି ପ୍ରତି ଟିକିଏ ଅନୁରାଗ ଥିଲା । ପ୍ରଜାତନ୍ତ୍ରର ସାହିତ୍ୟ ପୃଷ୍ଠାରେ କେତେବେଳେ କେମିତି କବିତାଟିଏ ବା ଗପଟିଏ ଛପା ହୋଇଗଲେ ଖୁସି ଆଉ ବାଡ଼ବତା ମାନୁ ନଥିଲା । ସମୟକ୍ରମେ ମୋର ସାମ୍ବାଦିକ ଜୀବନ ମଧ୍ୟ ଆରମ୍ଭ ହୋଇଥିଲା ସେଇ ପ୍ରଜାତନ୍ତ୍ରରେ । କେତେବେଳେ କେମିତି ଆକାଶବାଣୀରେ କବିତା ଓ ଗପ ଆବୃତ୍ତି କରିବାର ମଧ୍ୟ ସୁଯୋଗ ମିଳିଥିଲା । ଏବେ ପଛକୁ ଫେରି ଚାହିଁଲେ ତାହା ନିହାତି ପ୍ରଭାବହୀନ ମନେ ହେଉଛି । ମୁକ୍ତ କଣ୍ଠରେ ସ୍ୱୀକାର କରିବି ଯେ ମୋର ଲେଖାଗୁଡିକରେ ସେତେଟା ଦମ୍ ନ ଥିଲା । ବୋଧହୁଏ କୁତୁକୁତିଆ ବୟସର ପ୍ରଭାବ ଲେଖାଲେଖି ଆଡକୁ ଟାଣି ନେଇଥିଲା ଯାହାର ଅକାଳ ମୃତ୍ୟୁ ଅବଶ୍ୟମ୍ଭାବୀ ଥିଲା । କିନ୍ତୁ ସେ ସମୟରେ ଜେ.ପି.ଙ୍କର ଯେଉଁସବୁ କବିତା ପ୍ରକାଶ ପାଉଥିଲା, ତା'ର ପ୍ରଭାବ ଥିଲା, ସେଥିରେ ଦମ୍ ଥିଲା ।

ଜୀବନରେ ଏହିପରି ଏକ ପର୍ଯ୍ୟାୟ ମଧ୍ୟ ଆମ ଦୁହିଁଙ୍କ ମଧ୍ୟରେ ସଂଯୋଗକୁ ପରୋକ୍ଷରେ ହେଲେ ମଧ୍ୟ ପ୍ରସାରିତ କରିବାରେ ସହାୟକ ହୋଇଥିଲା । ଆଉ ଗୋଟିଏ ଘଟଣା ମନେ ଅଛି । ବନ୍ଧୁ ଶରତ ପୂଜାରୀ (ପରବର୍ତ୍ତୀ କାଳରେ ଅଧ୍ୟାପନା ସହିତ ଓଡ଼ିଆ ସିନେମା ଜଗତର ମହାନାୟକ), ଅବନୀ ବରାଳ (ପରବର୍ତ୍ତୀ କାଳରେ ଅଧ୍ୟାପନା ସହିତ ଜଣେ ପ୍ରତିଷ୍ଠିତ ସାମ୍ୟବାଦୀ ନେତା) ଓ ଆଉ କେତେଜଣ ମିଶି 'ଲେଖା' ନାମରେ ଗୋଟିଏ ପତ୍ରିକା ପ୍ରକାଶ କଲୁ । ସେତେବେଳେ ଜେ.ପି.ଙ୍କୁ ଲୋଡ଼ିବାର ଓ ତାଙ୍କ ସହଯୋଗ ପାଇବାରେ କିଛି ଅସୁବିଧା ହୋଇ ନଥିଲା ।

ଆହ୍ଲାବାଦ ଯିବା ପରେ ବେଶ୍ କିଛିକାଳ ଆମ ଭିତରେ ଯୋଗାଯୋଗ ସମ୍ଭବ ହୋଇ ନ ଥିଲା । ଆଇ.ଏ.ଏସ୍.ରେ ଉତ୍ତୀର୍ଣ୍ଣ ହୋଇ ସେ ଓଡ଼ିଶା କ୍ୟାଡର୍‌ରେ ଯୋଗ ଦେବା ପରେ ଆସ୍ତେ ଆସ୍ତେ ପୁଣି ସେହି ପୁରୁଣା ସଂପର୍କ ନିବିଡ଼ ହେବାକୁ

ଲାଗିଲା । ସେ ଜଣେ ପଦସ୍ଥ ସରକାରୀ କର୍ମକର୍ତ୍ତା ଓ ମୁଁ ଜଣେ ପେସାଦାର ସାମ୍ବାଦିକ । ବ୍ୟକ୍ତିଗତ ସ୍ତରରେ ବନ୍ଧୁତା ବ୍ୟତୀତ ବୃତ୍ତିଗତ କର୍ତ୍ତବ୍ୟ ସଂପାଦନ କରିବା କ୍ଷେତ୍ରରେ ମଧ୍ୟ ଆମର ଯୋଗାଯୋଗ ବୃଦ୍ଧି ପାଇଥିଲା । ୧୯୬୫-୬୬ ସାଲରେ କଳାହାଣ୍ଡିରେ ଦୁର୍ଭିକ୍ଷପ୍ରାୟ ଅବସ୍ଥା ଦେଖା ଦେଇଥିଲା । ସେତେବେଳେ ସେ ଥିଲେ ଜିଲ୍ଲାପାଳ । ମୁଁ ବୃତ୍ତିର ତାଡନାରେ ଯାଇଥିଲି ସେହିସବୁ ଅନାଟନଗ୍ରସ୍ତ ଅଞ୍ଚଳକୁ । ଜେ.ପି.ଙ୍କୁ ଦେଖାକଲି । ସରକାରୀ ଚାକିରିର ଶୃଙ୍ଖଳା ମଧ୍ୟରେ ରହି ସେ ମତେ ଅବସ୍ଥା ସଂପର୍କରେ ଯେତିକି ଚିତ୍ର ଦେଇଥିଲେ, ମୋ ପାଇଁ ତାହା ଯଥେଷ୍ଟ ଥିଲା । କିନ୍ତୁ ଅବସ୍ଥାର ଚିତ୍ର ଦେବା ବେଳେ ସେ ନିଜେ କୌଣସି ମତ ବା ମନ୍ତବ୍ୟ ଦେଇ ନ ଥିଲେ । କ୍ଷେତ୍ରରେ ପରିସ୍ଥିତି ଅନୁଧ୍ୟାନ କରି ଅମୃତ ବଜାର ପତ୍ରିକାରେ (ସେତେବେଳେକୁ ମୁଁ ଓଡ଼ିଶା ପାଇଁ ଅମୃତ ବଜାର ପତ୍ରିକାର ଷ୍ଟାଫ୍ ପ୍ରତିନିଧି ହୋଇ ସାରିଥିଲି) ଲେଖିଥିଲି- ମରୁଡ଼ି ନୁହେଁ, କଳାହାଣ୍ଡି ଦୁର୍ଭିକ୍ଷଗ୍ରସ୍ତ । ତତ୍କାଳୀନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ସଦାଶିବ ତ୍ରିପାଠୀ ସମ୍ବାଦଟି ପାଠକରି ମତେ ଡାକି ପରିସ୍ଥିତି ସଂପର୍କରେ ଆଲୋଚନା କରିଥିଲେ ।

ସାହିତ୍ୟ ଓ କଳାର ସାଧନାକୁ ସଂପୂର୍ଣ୍ଣ ସମୟ ଦେବା ଲାଗି ଆଇ.ଏ.ଏସ୍.ରୁ ଅବସର ନେବାର ବହୁବର୍ଷ ପରେ ନିକଟରେ ତାଙ୍କ ସମ୍ପର୍କରେ ପ୍ରକାଶିତ ଏକ ଇଂରାଜୀ ସଂକଳନରେ (Words on Canvas: J.P.Das and His Work) ସେ ନିଜେ ସେତେବେଳର କଳାହାଣ୍ଡି ପରିସ୍ଥିତି କିଭଳି ଭୟଙ୍କର ଦୁର୍ଭିକ୍ଷର ରୂପ ନେଇଥିଲା, ତାହା ଲେଖିଛନ୍ତି । ୧୮୬୬ ସାଲର ନଅଙ୍କ ଦୁର୍ଭିକ୍ଷ ସଂପର୍କରେ ଉଲ୍ଲେଖ କରି ସେ କହିଛନ୍ତି- ସେତେବେଳେ ଯେପରି ପରିସ୍ଥିତିର ଭୟାବହତା ସତ୍ତ୍ୱେ ବାଲେଶ୍ୱରରୁ ବାହାରକୁ ଖାଦ୍ୟଶସ୍ୟ ଚାଲାଣ ଉପରେ ବ୍ରିଟିଶ୍ କମିଶନର ପ୍ରତିବନ୍ଧକ ଉଠାଇ ଦେଇଥିଲେ, ସେହିପରି ତାଙ୍କ ବାରଣ ସତ୍ତ୍ୱେ ରାଜ୍ୟ ସରକାର କଳାହାଣ୍ଡିରୁ ଚାଉଳ ଚାଲାଣ ଉପରେ କଟକଣା ଉଠାଇ ନେବାକୁ ଆଦେଶ ଦେଇଥିଲେ । ମରୁଡ଼ିରେ ସଂପୂର୍ଣ୍ଣ ଫସଲ ହାନିଠାରୁ ଅନାହାର ମୃତ୍ୟୁ ଅଭିଯୋଗ ପର୍ଯ୍ୟନ୍ତ ପ୍ରତ୍ୟେକଟି ଅଘଟନ ସଂପର୍କରେ ସରକାରଙ୍କୁ ଜଣାଇବା ସତ୍ତ୍ୱେ ସରକାରୀ ସ୍ତରରୁ ଏପ୍ରକାର ଆଦେଶ ତାଙ୍କୁ ନିଶ୍ଚିତ ଭାବରେ ବିଚଳିତ କରିଥିଲା । ସେ ଲେଖିଛନ୍ତି ଯେ ସରକାରଙ୍କ ଉଚ୍ଚ କର୍ମକର୍ତ୍ତାମାନେ ଅନେକ ସମୟରେ କ୍ଷେତ୍ରର ପ୍ରକୃତ ପରିସ୍ଥିତି ହୃଦୟଙ୍ଗମ କରିପାରନ୍ତି ନାହିଁ । କିନ୍ତୁ ଜେ.ପି.ତାଙ୍କ ବିବେକର ତାଡନାକୁ ଲୁଚାଇ ନାହାନ୍ତି । ସ୍ୱେଚ୍ଛାକୃତ ଅବସର ନେବା ପରେ ମୁଁ ଦିନେ ପଚାରିଥିଲି, 'ଆଉ କେତେଟା ବର୍ଷରେ ତମେ ତ ମୁଖ୍ୟ ଶାସନ ସଚିବ ବା ଚିଫ୍ ସେକ୍ରେଟାରୀ ପଦକୁ ଉନ୍ନୀତ ହୋଇ ଅବସର ନେଇଥାନ୍ତ ।

ଏତେ ଶୀଘ୍ର କାହିଁକି ?' ପ୍ରବୃତ୍ତିର ତାଡନା ତ ଥିଲା । କିନ୍ତୁ ବାବୁତନ୍ତ୍ର ଓ ରାଜନୈତିକ ନେତାମାନଙ୍କ ମଧ୍ୟରେ ସଂପର୍କର ଅନୁଚିତ ମେଣ୍ଟ ମଧ୍ୟରେ ସେ ପାରି ଉଠି ନଥାନ୍ତେ ବୋଲି କହିଥିଲେ । ପଦୋନ୍ନତି ପାଇଥିଲେ ମଧ୍ୟ ଚିଫ୍ ସେକ୍ରେଟାରୀ ପଦ ପାଇବା ପାଇଁ ରାଜନୈତିକ କର୍ଣ୍ଣଧାରମାନଙ୍କୁ ପ୍ରଭାବିତ କରିବା ହୁଏତ ତାଙ୍କ ପକ୍ଷରେ ସମ୍ଭବ ହୋଇ ନଥାନ୍ତା । ଅବସର ନେବା ପରେ ସେ କେବେହେଲେ ଦୁଃଖିତ ହୋଇଥିବାର ମୁଁ ଜାଣିନାହିଁ । ବରଂ ତାଙ୍କ ସୃଜନଶୀଳତା ସାହିତ୍ୟ, ଚିତ୍ରକଳା, ପଟ୍ଟଚିତ୍ର ଉପରେ ଗବେଷଣା, ନାଟ୍ୟମଞ୍ଚ ଇତ୍ୟାଦି ବିଭିନ୍ନ କ୍ଷେତ୍ରରେ ପ୍ରସାରିତ ହୋଇଥିଲା । ତାଙ୍କ ବନ୍ଧୁ ମହଲର ପରିସର ମଧ୍ୟ ବୃଦ୍ଧି ପାଇଥିଲା । ଜେ.ପି.ଙ୍କ ସାହିତ୍ୟ, କଳାକୃତି ଇତ୍ୟାଦି ସଂପର୍କରେ ଆଲୋଚନା କରିବାର ଦକ୍ଷତା ବା ଧୃଷ୍ଟତା ମୋର ନାହିଁ । ତେଣୁ ସେ ଦିଗ ସଂପର୍କରେ ନିରବ ରହିବା ଉଚିତ ମନେ କରୁଛି ।

ତାଙ୍କ ସହିତ ଅନେକ ଅନ୍ତରଙ୍ଗ ସମୟ କଟିଛି । ତା ମଧ୍ୟରୁ ଗୋଟିଏ ହେଉଛି ସେ, ତାଙ୍କ ପ୍ରଥମ ପୁସ୍ତକ 'ପ୍ରଥମ ପୁରୁଷ'ର ପ୍ରକାଶକ ଏବଂ ଓଡ଼ିଆ ଚଳଚ୍ଚିତ୍ର ଓ ନାଟ୍ୟ ମଞ୍ଚର ଜଣେ ପ୍ରତିଷ୍ଠିତ ବ୍ୟକ୍ତି ବନ୍ଧୁ ଅନନ୍ତ ମହାପାତ୍ର ଏବଂ ମୁଁ ଯେଉଁ ରାତିଟି ତାଙ୍କ ସହିତ କଲିକତାରେ କଟାଇଥିଲୁ । ପ୍ରଥମେ ଗଲୁ ସାରକାରିନା ଥିଏଟର ମଞ୍ଚକୁ । ସେଠାରେ ସେ ସମୟର ପ୍ରସିଦ୍ଧ ବଙ୍ଗଳା ସିନେମା ଓ ମଞ୍ଚ ଜଗତର କୃତୀ ଅଭିନେତା ରବି ଘୋଷ ଜେ.ପି.ଙ୍କୁ ତାଙ୍କ ବନ୍ଧୁ ହିସାବରେ ଆମମାନଙ୍କୁ ଯେପରି ଆଦର ଅଭ୍ୟର୍ଥନାର ସହିତ ପାଛୋଟି ନେଇ ବସାଇଥିଲେ, ସେଥିରୁ ବଙ୍ଗଳାର ନାଟ୍ୟଜଗତ ସହିତ ତାଙ୍କର ନିବିଡ଼ତା କେତେ ଗଭୀର ତାହା ବୁଝିପାରିଥିଲି । ସତ୍ୟଜିତ୍ ରାୟଙ୍କଠାରୁ ଆରମ୍ଭ କରି ବଙ୍ଗଳାର ଚଳଚ୍ଚିତ୍ର, ନାଟ୍ୟମଞ୍ଚ ଓ ସାହିତ୍ୟରେ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ସହିତ ତାଙ୍କର ଘନିଷ୍ଠ ସଂପର୍କ ଥିଲା । ଥିଏଟର ଦେଖିବା ପରେ ସେ ଆମକୁ ନେଇଗଲେ ନେଓଟିଆ ନାମକ ଜଣେ ବିଶିଷ୍ଟ ଉଦ୍ୟୋଗପତିଙ୍କ ପ୍ରଶସ୍ତ ବାସଭବନକୁ । ସେଠାରେ ସେଦିନ ଶାସ୍ତ୍ରୀୟ ସଂଗୀତର ଯେଉଁ ସମାହାର ଅନୁଷ୍ଠିତ ହୋଇଥିଲା ତାହା ଭୁଲିବାର ନୁହେଁ । ଦେଶର ପ୍ରତିଷ୍ଠିତ ଶାସ୍ତ୍ରୀୟ ସଂଗୀତ ଶିଳ୍ପୀମାନେ ସେଥିରେ ଭାଗ ନେଇଥିଲେ । ସାହିତ୍ୟ ଓ ସଂସ୍କୃତିର ପ୍ରତ୍ୟେକଟି ବିଭାଗ ପ୍ରତି ତାଙ୍କର ଅନୁରକ୍ତି ବୋଧହୁଏ ତାଙ୍କ ଶ୍ରେଣୀର ଖୁବ୍ କମ୍ ଲୋକଙ୍କଠାରେ ଦେଖାଯାଏ । ଆହୁରି ଅନେକ ସରସ ଓ ମଧୁର ସମୟ ମଧ୍ୟ କଟିଛି । ସେ ସମ୍ପର୍କରେ ଲେଖିବାକୁ ଗଲେ ଲେଖାଟି ବହୁତ ଲମ୍ବା ହୋଇଯିବ ।

ଜେ.ପି. କେବଳ ଜଣେ କବି, କଥାକାର, ଚିତ୍ରଶିଳ୍ପୀ, କଳାକାର, ନାଟ୍ୟକାର

ବା ଗବେଷକ ନୁହନ୍ତି । ତାଙ୍କ ସହିତ ବସି ଆଳାପ ଆଲୋଚନା କଲାବେଳେ ତାଙ୍କର ବହୁମୁଖୀ ପ୍ରତିଭା କେବେହେଲେ ସେ କାହା ଆଗରେ ଧରା ପକାଇବାକୁ ଦିଅନ୍ତି ନାହିଁ । ସତେ ଯେପରି ସେ ଯେକୌଣସି ସାଧାରଣ ମଣିଷଟିଏ । ତାହା ହିଁ ବୋଧହୁଏ ତାଙ୍କ ବ୍ୟକ୍ତିତ୍ୱର ବିଶେଷତ୍ୱ ଯେଉଁଥିପାଇଁ ସେ ନିଜର ବନ୍ଧୁ ମହଲ ପ୍ରସାରିତ କରିବା ସହିତ ସମସ୍ତଙ୍କର ଅତି ଆପଣାର ହୋଇଯାଆନ୍ତି । ଦିଲ୍ଲୀରୁ ଭୁବନେଶ୍ୱର ଆସିଲେ ଅନ୍ତତଃ ଗୋଟିଏ ସନ୍ଧ୍ୟା କିଛି ବନ୍ଧୁଙ୍କ ଗହଣରେ ସେ କଟାନ୍ତି । ମୁଁ ବି ଯଥାବିଧି ଖବର ପାଇ ସେଥିରେ ଯୋଗଦିଏ । ସରସ୍ୱତୀ ସମ୍ମାନ ପାଇବା ପରେ ସେ ଯେତେବେଳେ ଭୁବନେଶ୍ୱର ଆସିଲେ, ସେତେବେଳେ ଆମେ କେତେଜଣ ବନ୍ଧୁ (ତା ମଧ୍ୟରେ ଅନନ୍ତ ମହାପାତ୍ର ଅଗ୍ରଣୀ) ଗୋଟିଏ ଅନୌପଚାରିକ ସମ୍ବର୍ଦ୍ଧନାରେ ଏକାଠି ହୋଇଥିଲୁ । ଅନେକ ବିଷୟ ଆଲୋଚନାର ପରିସରକୁ ଆସିଥିଲା । କିନ୍ତୁ ତାଙ୍କର ସାହିତ୍ୟ କୃତି ସଂପର୍କରେ କୌଣସି ପ୍ରକାର ଆଲୋଚନାକୁ ସେ ଏଡ଼ାଇ ଯାଇଥିଲେ । ସେ ଜଣେ ଭିନ୍ନ ସ୍ୱାଦର ମଣିଷ ଓ ନିଆରା ସ୍ୱାଦର ବନ୍ଧୁ । ତାଙ୍କ ଆଚରଣରେ ତିଳେ ମାତ୍ର କୃତ୍ରିମତା ବା ଅହମିକା କେବେହେଲେ ଅନୁଭବ କରିନାହିଁ ।

# ପ୍ରଥମ ଦେଖାରୁ ପ୍ରଥମ ପୁରୁଷ ପର୍ଯ୍ୟନ୍ତ

**ଅନନ୍ତ ମହାପାତ୍ର**

୧୯୬୪ ମସିହାରେ ଗୋଟେ ଖରାବେଳେ, ପ୍ରଥମେ ଜଗନ୍ନାଥ ପ୍ରସାଦ ଦାସଙ୍କୁ ଦେଖିଥିଲି କଲିକତାର ପାର୍କଷ୍ଟ୍ରିଟ୍‌ରେ। ମୁଁ ଉଇଣ୍ଡୋ ସପିଂ କରୁଥାନ୍ତି। ସେ ତାଙ୍କ ପତ୍ନୀ ମିତ୍ରା ସହିତ ଥିଲେ। ମିତ୍ରାଙ୍କୁ ମୁଁ ଆଗରୁ ଜାଣିଥିଲି। ଆମେ ଗୋଟେ ଇଣ୍ଟର-ୟୁନିଭରସିଟି ଯୁବ ପ୍ରତିଯୋଗିତାରେ ଭାଗ ନେବା ପାଇଁ ଏକାଠି ଦିଲ୍ଲୀ ଯାଇଥିଲୁ। ପରେ ଶୁଣିଥିଲି ଜଣେ ଆଇ.ଏ.ଏସ୍. ଅଫିସରଙ୍କୁ ବାହା ହେଇଯାଇଛି ମିତ୍ରା।

ମୁଁ ସେତେବେଳେକୁ ସିନେମାରେ ଅଭିନୟ କରୁଥାଏ ଏବଂ ନାଟ୍ୟ-ଆନ୍ଦୋଳନ ସହ ଜଡିତ ଥିଲି। ସେଦିନ ସେଇ ପ୍ରଥମ ଥରର ଦେଖା ହେବା ବେଳେ ମନେ ହେଇଥିଲା, ଜେପି ମତେ ଟିକେ ଟିକେ ଜାଣିଥିଲେ। ହଁ, ଆମେ ସମସ୍ତେ ତାଙ୍କୁ ଶ୍ରଦ୍ଧାରେ ଜେପି ବୋଲି ଡାକୁଥିଲୁ।

ଜେପି ଓ ମିତ୍ରାଙ୍କର ଇଚ୍ଛାଥିଲା କୌଣସି ଏକ ସିନେମାର ସୁଟିଂ ଦେଖିବେ। ମୁଁ ସେମାନଙ୍କୁ ଏନ୍.ଟି. ଷ୍ଟୁଡିଓକୁ ନେଇଗଲି। ବଙ୍ଗଳାର ପ୍ରସିଦ୍ଧ ହୀରୋ ଉତ୍ତମ କୁମାରଙ୍କ ସୁଟିଂ ଚାଲିଥିଲା। ମୁଁ ତାଙ୍କର ପରିଚିତ ଥିଲି। ଏଣୁ ସୁଟିଂ ଦେଖିବା ଠିକ୍ ଢ଼ଙ୍ଗରେ ହେଲା। ସେଠୁ ଫେରି ଏକାଠି ଖାଇଥିଲୁ ଏବଂ ଲମ୍ବା ଗପ ଚାଲିଲା। ମତେ ବେଶ୍ ମଜା ଲାଗିଥିଲା ଯେ, ଜେ.ପି. କେବଳ ସାହିତ୍ୟ ନୁହେଁ, ସିନେମା,

ନାଟକ ଆଦି ସବୁଥିରେ ମାହିର ଥିଲେ। ସାଧାରଣତଃ ଆଇ.ଏ.ଏସ୍. ଅଫିସରମାନଙ୍କୁ ଆମେ ଏସବୁ ସହ ସାମିଲ ଥା'ନ୍ତି ବୋଲି ଭାବୁ ନଥିଲୁ।

ମତେ ସବୁଠୁ ବେଶୀ ଆଶ୍ଚର୍ଯ୍ୟ ଲାଗିଥିଲା ଯେ, ଓଡ଼ିଶାର କଳାହାଣ୍ଡି ଭଳି ଗୋଟେ ଜାଗାରେ କଲେକ୍ଟର ଥାଇ ବି ବାହାରର ସଦ୍ୟତମ ସାହିତ୍ୟ ଓ ନାଟକ ଆଦିର ଖବର ଜେପି ରଖୁଥିଲେ। ମୁଁ ଆଚମ୍ଭିତ ହେଇଥିଲି ଯେ ଜେପି କବିତା ଲେଖୁଥିଲେ ଏବଂ ଚିତ୍ର ଆଙ୍କିବାକୁ ବି ଭଲ ପାଉଥିଲେ।

ବର୍ଷେ ଦି' ବର୍ଷ ପରେ ଜେପି ଭୁବନେଶ୍ୱରକୁ ବଦଳି ହୋଇ ଚାଲିଆସିଥିଲେ। ଏବେ ପରିଚିତି ଆହୁରି ବଢ଼ିଯାଇଥିଲା ଏବଂ ସଂଧ୍ୟାସବୁ କଟିଲା ସାହିତ୍ୟ ଆସରରେ, ଗପ, କବିତା, ନାଟକ ପଢ଼ାରେ।

ଅଖିଳମୋହନ ପଟ୍ଟନାୟକଙ୍କ ଗଳ୍ପ, ବିଶ୍ୱଜିତ ଦାସଙ୍କ ନାଟକ ଏବଂ ଜେପିଙ୍କର କବିତାସବୁରେ ଆସର ବେଶ୍ ଜମୁଥିଲା। ନାଟକ ବିଷୟରେ ବେଶ୍ ଚର୍ଚ୍ଚା ହେଉଥିଲା। କ୍ଲବ୍ ପାଇଁ ଗୋଟେ ଛୋଟ ନାଟକର ମୁଁ ନିର୍ଦ୍ଦେଶନା ଦେଇଥିଲି ଯାହାକୁ ଜେପି ନିଜେ ଲେଖିଥିଲେ ଏବଂ ମିତ୍ରା, ସେ ଓ ମୁଁ ସେଥିରେ ଅଭିନୟ କରିଥିଲୁ। ନାଟକଟିର ନାମ 'ଜଣେ ଜଣକ ପାଇଁ'।

୧୯୭୧ ହେବ ବୋଧେ। ଦିନେ ଗୋଟେ କବିତା ସନ୍ଧ୍ୟାରେ ମୁଁ ଜେପିଙ୍କୁ ପ୍ରସ୍ତାବ ଦେଲି ଯେ, ତାଙ୍କର କବିତା ସଂକଳନଟିଏ ଛପା ହେବା ନିହାତି ଦରକାର। ସେ ଆଗରୁ ଏ ବିଷୟରେ ଭାବି ନଥିଲେ। ବହି ବିକ୍ରି ସହ ସଂପୃକ୍ତ ଥାଇ ମୋର ପ୍ରକାଶନ ସଂପର୍କରେ କିଛିଟା ଧାରଣା ଥିଲା। ମୁଁ ନିଜେ ପ୍ରକାଶକ ହେବି ବୋଲି ପ୍ରସ୍ତାବ ଦେଲି। ସେ ରାଜି ହେଇଗଲେ। କେମିତି କେଜାଣି ଆମେ ଦୁଇଜଣଙ୍କର ମୁଣ୍ଡରେ ପଶିଲା ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ଦ୍ଦେଶକ ସତ୍ୟଜିତ ରାୟଙ୍କୁ କବିତା ବହିର ପ୍ରଚ୍ଛଦ ଆଙ୍କିବା କଥା କହିବା ପାଇଁ। ଆମେ ଦି'ଜଣଯାକ ସତ୍ୟଜିତ ରାୟଙ୍କୁ ବେଶ୍ ଶ୍ରଦ୍ଧା କରୁଥିଲୁ। ତେବେ ସତ୍ୟଜିତ ରାୟଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ କିରଣ ରାହାଙ୍କୁ ମୁଁ ଜାଣିଥିଲି ଏବଂ ଜେପି ଜାଣିଥିଲେ ନିର୍ଦ୍ଦେଶକଙ୍କର ଜଣେ ସଂପର୍କୀୟା ମିନୁ ମୁଖାର୍ଜୀଙ୍କୁ। ସେମାନଙ୍କ ଦ୍ୱାରା ସତ୍ୟଜିତ୍ ରାୟଙ୍କୁ ହିଁ ରାଜି କରେଇ ଦିଆଗଲା। କିନ୍ତୁ ସର୍ତ୍ତ ଥିଲା, କଭର ଆଙ୍କିବା ପୂର୍ବରୁ କବିତାଗୁଡିକର ଉଭୟ ଇଂରାଜୀ ଓ ବଙ୍ଗଳା ଅନୁବାଦ ସେ ପଢ଼ିବେ। ଦ୍ୱିତୀୟ ସର୍ତ୍ତ ଥିଲା, କଭରଟି ରେଡିଆଣ୍ଟ ପ୍ରେସ୍‌ରେ ହିଁ ଛପାହେବ, ଆଉ କୋଉଠି ନୁହେଁ। ଯେତେବେଳେ ବହିଟି ପ୍ରକାଶିତ ହେଲା, ଅନେକେ ବିଶ୍ୱାସ କରିପାରି ନଥିଲେ ଯେ ସତରେ ସତ୍ୟଜିତ ରାୟ ପ୍ରଚ୍ଛଦ

ଆଙ୍କିଥିବେ ବୋଲି ଏବଂ ଅଭିନେତା ଅନନ୍ତ ମହାପାତ୍ର ପ୍ରକୃତରେ ତା'ର ପ୍ରକାଶକ !

ମୋ ପାଇଁ ତାହା ଥିଲା ପ୍ରଥମ ଓ ଶେଷ ବହି । ଆଉ କାହାର ବହି ମୁଁ ପ୍ରକାଶ କରିନାହିଁ । ଜେପିଙ୍କର ବି ତାହା ଥିଲା ପ୍ରଥମ ବହି- ପ୍ରଥମ ପୁରୁଷ - କିନ୍ତୁ ଶେଷ ନୁହେଁ ।

ନାଟ୍ୟ ନିର୍ଦ୍ଦେଶକ ଓ ଅଭିନେତା

# କବିବନ୍ଧୁ ଜେପି:
# ଏକ ସ୍ମୃତି ସମ୍ଭାଷଣ

ବ୍ରଜନାଥ ରଥ

କବିବଂଧୁ ଜେ.ପି.ଦାସ (ଜଗନ୍ନାଥ ପ୍ରସାଦ ଦାସ)ଙ୍କ ସହ ମୋର ପ୍ରଥମ ଦେଖା ଓ ପରିଚୟ ପ୍ରାୟ ଆଜକୁ ୫୭ ବର୍ଷ ତଳେ ୧୯୫୨ ମସିହା ଡିସେମ୍ବର ମାସରେ। ସେତେବେଳେ ସେ କଟକ ଖ୍ରୀଏଷ୍ଟ୍ କଲେଜର ଛାତ୍ର ଆଉ ମୁଁ ଫକୀର ମୋହନ୍ କଲେଜର। ନିଖିଳ ଉତ୍କଳ ଛାତ୍ରସଂଘର ସମ୍ମିଳନୀରେ କଟକ ଟାଉନ ହଲ୍‌ରେ ବନ୍ଧୁ ମନୋଜ୍ ଦାସ, ମୁଁ ଆଉ କେତେଜଣ ଛାତ୍ରବନ୍ଧୁ ପ୍ରତିନିଧି ଭାବରେ ବାଲେଶ୍ୱରକୁ ଆସି ଏହି ସମ୍ମିଳନୀରେ ଯୋଗ ଦେଇଥାଉଁ। ସେଠାକୁ ବଂଧୁ ଜଗନ୍ନାଥ ପ୍ରସାଦ ଦାସ ମଧ୍ୟ ଆସିଥାନ୍ତି। ମୋର ବାଲ୍ୟବଂଧୁ ସୁରେଶ ମହାନ୍ତି ସେତେବେଳେ କଟକରେ ତା' ବାପା ୰ ରମେଶ ଚନ୍ଦ୍ର ମହାନ୍ତି (ପ୍ରଜାତନ୍ତ୍ରର ତତ୍କାଳୀନ ବାର୍ତ୍ତା ସଂପାଦକ)ଙ୍କ ପାଖରେ ରହି ଖ୍ରୀଏଷ୍ଟ କଲେଜରେ ମଧ୍ୟ ପଢୁଥାଏ। ସେ ଜଗନ୍ନାଥଙ୍କ ଏକା ଶ୍ରେଣୀର ବଂଧୁ। ତା' ଜରିଆରେ ତାଙ୍କ ସହିତ ବଂଧୁତାର ସୂତ୍ରପାତ ହେଲା ସହି ସମ୍ମିଳନୀରେ। ପୂର୍ବରୁ ଜେ.ପି.ଙ୍କ କବିତା ରବିବାରର ପ୍ରଜାତନ୍ତ୍ର (ସାହିତ୍ୟ ପ୍ରସ୍ଥ) ଓ ଅନ୍ୟାନ୍ୟ ପତ୍ର-ପତ୍ରିକାରୁ ପଢ଼ିଥିଲି। ସେ କବିତାମାନଙ୍କରେ ମାର୍କ୍ସୀୟ ଆଦର୍ଶ ଅନେକାଂଶରେ ପ୍ରତିଫଳିତ ହେଉଥିଲା ଏବଂ ସେସବୁର ଥିଲା ଜୀବନବାଦୀ ଓ ଆଶାବାଦୀ ଚିନ୍ତାଧାରା। ମୋର ମଧ୍ୟ ସେତେବେଳକୁ କିଛି କିଛି କବିତା 'ଡଗର' ଓ ଅନ୍ୟ କେତେକ

ପତ୍ରିକାରେ ପ୍ରକାଶ ପାଇଥାଏ। ତେଣୁ ଆମ ଭିତରେ ପ୍ରଥମ ଦେଖାରେ ହିଁ ବନ୍ଧୁତ୍ୱ ସୃଷ୍ଟି ହୋଇଗଲା। ଏ ବଂଧୁତା ଥିଲା ସାରସ୍ୱତ ଓ କିଛି ପରିମାଣରେ ଆଦର୍ଶଗତ। ଆମେ ସମବୟସ୍କ। ୧୯୩୬ ମସିହାରେ ଆମ ଉଭୟଙ୍କର ଜନ୍ମ। ତାଙ୍କ ପିତା ଶ୍ରୀଧର ଦାସ ହେଲେ ଜଣେ ଆଦର୍ଶ ଅଧ୍ୟାପକ ଓ ସାରସ୍ୱତ ସାଧକ, ଯାହାଙ୍କ ପ୍ରଭାବ ଅନେକାଂଶରେ ଜେ.ପି.ଙ୍କ ଉପରେ ପଡିଥିବାର ମୁଁ ଅନୁଭବ କରେ। ସେହିଭଳି ମୋର ପୂଜ୍ୟ ପିତା ମଧ୍ୟ ଥିଲେ ଜଣେ ସାହିତ୍ୟପ୍ରେମୀ ଆଦର୍ଶ ଶିକ୍ଷକ। ତାଙ୍କ ଆଦର୍ଶ ଓ ପ୍ରେରଣା ମୋତେ ବହୁଭାବରେ ପ୍ରଭାବିତ କରିଛି।

ପଢ଼ାପଢ଼ି ସରିଗଲା। ବଂଧୁ ଜଗନ୍ନାଥ ବାବୁ ଭାରତୀୟ ପ୍ରଶାସନିକ ସେବାରେ ଯୋଗଦେଲେ। ଦେଖା ସାକ୍ଷାତ୍ ଆଉ ପ୍ରାୟ ହେଲା ନାହିଁ। ମୋର ଯାହା ମନେ ହୁଏ, ସେ ଦୀର୍ଘକାଳ ଲେଖାଲେଖିରୁ ନିବୃତ୍ତ ଥିଲେ। ପତ୍ର-ପତ୍ରିକାରେ ତାଙ୍କ ଲେଖା ଆଉ ଦେଖିବାକୁ ମିଳିଲା ନାହିଁ। କିନ୍ତୁ ପୁସ୍ତକ ଅଧ୍ୟୟନରୁ ବିରତ ନ ଥିଲେ। ଯେମିତି ଏକ ନୂଆ ଅଧ୍ୟାୟର ଅୟମାରମ୍ଭ ପାଇଁ ସେ ନିଜକୁ ପ୍ରସ୍ତୁତ କରୁଥିଲେ। ୧୯୬୦ରେ ମୋର ପ୍ରଥମ କବିତା ସଂକଳନ 'ମରୁଗୋଲାପ' ପ୍ରକାଶ ପାଇଲା ବେଳକୁ ତାଙ୍କର କୌଣସି ସଂକଳନ ପ୍ରକାଶ ପାଇ ନ ଥିଲା। ଏହାର ଅଳ୍ପ କିଛି ବର୍ଷ ପରେ ତାଙ୍କର ପ୍ରଥମ କବିତା ଗ୍ରନ୍ଥ- 'ପ୍ରଥମ ପୁରୁଷ' ପ୍ରକାଶ ପାଇଲା, ଯାହାର ରୂପ ଓ ଗୁଣ ସଂପୂର୍ଣ୍ଣ ଭିନ୍ନ ଥିଲା। ପ୍ରଚ୍ଛଦ ଚିତ୍ର ଅଙ୍କନ କରିଥିଲେ ପ୍ରଖ୍ୟାତ ଚିତ୍ରଶିଳ୍ପୀ ଓ ଫିଲ୍ମ ନିର୍ଦ୍ଦେଶକ ସତ୍ୟଜିତ୍ ରାୟ। ଆକାର ଥିଲା ଡିମାଇ ଆଠ ପୃଷ୍ଠାର ଲମ୍ବା ସାଇଜ୍। ଭିତରର କବିତାସଜ୍ଜା ମଧ୍ୟ ଚିରାଚରିତ ପନ୍ଥାରୁ ଭିନ୍ନ। ବେଶ୍ ଆଖି ଦୃଶିଆ ଓ ଅପାରମ୍ପରିକ। ଏତେବେଳକୁ ଜଗନ୍ନାଥ ପ୍ରସାଦ ଦାସ ସାଧାରଣରେ ଜେ.ପି. ଦାସରେ ନାମିତ ହୋଇ ସାରିଥିଲେ। ପ୍ରଥମାବସ୍ଥାରେ (୧୯୫୦-୬୦) ଲେଖୁଥିବା ତାଙ୍କର କବିତାର ଧାରା ବଦଳି ଯାଇଥିଲା। କାବ୍ୟିକ ଆଦର୍ଶ ଓ ଶୈଳୀର ମଧ୍ୟ ପରିବର୍ତ୍ତନ ଘଟିଥିଲା। ଭିନ୍ନ ଏକ କବି ଜଗନ୍ନାଥଙ୍କ ପ୍ରସାଦ ଦାସଙ୍କ ନବଜନ୍ମ ହୋଇଥିଲା। ଦୀର୍ଘ ନିରବତା ପରେ ସେ ମେଘନାଦ ଭଳି ଉଠି ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିବାକୁ ଲାଗିଲେ। କବିତା ସାଙ୍ଗକୁ ଗଳ୍ପ, ନାଟକ ମଧ୍ୟ ଲେଖିଥିଲେ। ଚିତ୍ର ଆଙ୍କିଲେ। ଶେଷରେ 'ଦେଶ କାଳ ପାତ୍ର' ନାମରେ ଯେଉଁ ବହିଟି ଉନବିଂଶ ଶତାବ୍ଦୀର ଓଡ଼ିଶାର ମହାନ୍ ବରପୁତ୍ରମାନଙ୍କ ଜୀବନ ଓ କର୍ମଧାରାକୁ ନେଇ ଉପନ୍ୟାସ ଶୈଳୀରେ ରଚନା କଲେ, ତାହା ଯେଭଳି ତଥ୍ୟପୂର୍ଣ୍ଣ, ସେଭଳି ବେଶ୍ ଉପଭୋଗ୍ୟ। ଏହାର ବିଷୟବସ୍ତୁ ଓ ପରିବେଷଣ ଶୈଳୀ ଖୁବ୍ ଚମତ୍କାର ଓ ମନୋଗ୍ରାହୀ।

ବଂଧୁ ଜଗନ୍ନାଥ ପ୍ରସାଦ ଦାସ କର୍ତ୍ତବ୍ୟରତ ରହି ଦିଲ୍ଲୀରେ ଅବସ୍ଥାନ କରିବାକୁ ଲାଗିଲେ। ଆଉ ଦେଖା-ସାକ୍ଷାତ୍ ହେଲା ନାହିଁ। ବହୁ ବର୍ଷ ପରେ ୧୯୮୬ ମସିହା ମାର୍ଚ୍ଚ ମାସରେ ତାଙ୍କ ସହ କଟକ ପାନ୍ଥନିବାସରେ ଏନ୍.ବି.ଟି. ପକ୍ଷରୁ ଆୟୋଜିତ ଏକ ସେମିନାରରେ ହଠାତ୍ ଦେଖାହେଲା। ମୁଁ ସେତେବେଳେ ଫକୀର ମୋହନ ସାହିତ୍ୟ ପରିଷଦ ପକ୍ଷରୁ ପ୍ରକାଶିତ ଓ ମୋ ଦ୍ୱାରା ସଂକଳିତ ଇଂରାଜୀ ପୁସ୍ତକ Phakirmohan : His Life and Literature ତାଙ୍କୁ ଉପହାର ଦେଲି। ସେ ଖୁବ୍ ଖୁସି ହେଲେ ଓ ପୁରୁଣା ସ୍ମୃତି ରୋମନ୍ଥନ କଲେ। ଫେରିଗଲା ପରେ ଏପ୍ରିଲ-୨, ୧୯୮୬ ମସିହାରେ ସ୍ନେହପୂର୍ଣ୍ଣ ପତ୍ରଟିଏ ଦେଇଥିଲେ। ସେଥିରେ ସେ ଲେଖିଥିଲେ- "ପ୍ରିୟ ବଂଧୁ, ଅନେକ ବର୍ଷ ପରେ ଆପଣଙ୍କ ସହିତ ପୁନର୍ବାର ସାକ୍ଷାତ ହେଲା- ଏହା ମୁଁ ସୌଭାଗ୍ୟ ମନେ କରୁଛି। ଫକୀର ମୋହନ ବହି ପଢ଼ିବାକୁ ଆରମ୍ଭ କରିଛି। ...... ମଝିରେ ମଝିରେ ପତ୍ରାଳାପ ରଖିଲେ ଖୁସି ହେବି।"

ଏହାପରେ ପୁଣି କିଛି ବର୍ଷ ଚାଲିଗଲା। ସେ ତାଙ୍କର କବିତାଗ୍ରନ୍ଥ 'ଆହ୍ନିକ' ପାଇଁ କେନ୍ଦ୍ର ସାହିତ୍ୟ ଅକାଦେମି ପୁରସ୍କାର ପାଇଲା ପରେ ମୁଁ ତାଙ୍କୁ ବଂଧୁ ଭାବରେ ଅଭିନନ୍ଦନ ଜଣାଇ ଚିଠିଟିଏ ଦେବାରୁ ସେ ୧୯୯୧ ଫେବୃୟାରୀ-୨୩ରେ ଉତ୍ତର ଛଳରେ ଲେଖିଥିଲେ-

ପ୍ରିୟ ବ୍ରଜନାଥ ବାବୁ,

ଆଜି ଆପଣଙ୍କ ପତ୍ର ପାଇ ବିଶେଷ ଖୁସି ହେଲି। ଅନେକ ବର୍ଷ ପରେ ସେଇ ଏନବିଟି ସେମିନାରରେ କଟକରେ ଦେଖା ହୋଇଥିଲା। ... 'ଆହ୍ନିକ'ର କବିତାମାନ ଭଲ ଲାଗିଲା ଜାଣି ଖୁସି ହେଲି। ଶେଷରେ ଜଣେ କବିଙ୍କୁ କବିତାଗୁଡିକ ଭଲ ଲାଗିଥିବା ମୋର ଅତି ଆନନ୍ଦର ବିଷୟ। ସମାଲୋଚକମାନେ କବିତା ବିଷୟରେ କଣ କହୁଛନ୍ତି, ତା ଅପେକ୍ଷା କବି ବନ୍ଧୁମାନେ କଣ କହୁଛନ୍ତି, ତା' ମୋ ପାଇଁ ବେଶି ମୂଲ୍ୟବାନ।

'ଆହ୍ନିକ' ପରେ ଲେଖିଥିବା କବିତାର ଗୋଟିଏ ସଂକଳନ 'ସ୍ଥିରଚିତ୍ର' ନାଁରେ ଫ୍ରେଣ୍ଡସ୍ ପବ୍ଲିଶର୍ସ ପ୍ରକାଶ କରିବାକୁ ଯାଉଛନ୍ତି; ଆଶା ସେ କବିତାଗୁଡିକ ମଧ୍ୟ ଆପଣଙ୍କୁ ଭଲ ଲାଗିବ। ମୁଁ ଗତବର୍ଷ ସାରା ଗୋଟିଏ ଐତିହାସିକ ଉପନ୍ୟାସ ଲେଖିବାରେ ବ୍ୟସ୍ତ ଥିଲି। (ଦେଶ-କାଳ-ପାତ୍ର ଶିରୋନାମାରେ ତାର କେତେକ ପରିଚ୍ଛେଦ ବିଭିନ୍ନ ପତ୍ର-ପତ୍ରିକାରେ ପ୍ରକାଶ ପାଇଛି; ଆପଣ ଦେଖିଥାଇ ପାରନ୍ତି)। ସେଇଟିକୁ ଶେଷ କରି ବର୍ତ୍ତମାନ ପୁଣି କବିତା ଲେଖିବାରେ ମନ ଦେଇଛି। ହଁ,

ଆପଣଙ୍କ କବିତା ପତ୍ର-ପତ୍ରିକାରୁ ପଢ଼ି ମୁଗ୍ଧ ହୋଇଥାଏ। 'ଲଘୁଶତକ'ର ପ୍ରାୟ ଅଧିକାଂଶ କବିତା ପଢ଼ିଛି। 'ହେ ମହାଜୀବନ' ପଢ଼ିବାର ଆଶା ରହିଲା। ...

ଇତି ଆପଣଙ୍କ ଜଗନ୍ନାଥ ପ୍ରସାଦ ଦାସ

ଏହା ପରେ ମଧ୍ୟ ତାଙ୍କ ସହ ଖଣ୍ଡେ ଦୁଇଖଣ୍ଡ ପତ୍ର ଆଦାନ ପ୍ରଦାନ ହେଉଥିଲା। ତେବେ ଗତ ୨୦୦୩ ଜାନୁଆରୀରୁ ୨୦୦୭ ଡିସେମ୍ବର ଶେଷ ପର୍ଯ୍ୟନ୍ତ ମୁଁ କେନ୍ଦ୍ର ସାହିତ୍ୟ ଅକାଦେମିର ସଦସ୍ୟ ଥିଲା ବେଳେ ଏହାର ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗଦେବାକୁ ଦିଲ୍ଲୀ ଗଲେ ତାଙ୍କ ସହିତ ପ୍ରାୟ ଦେଖାସାକ୍ଷାତ୍ ହେଉଥିଲା। ଥରେ ଦୁଇଥର ହାଉଜ୍‌ଖାସ୍‌ସ୍ଥିତ ତାଙ୍କ ବାସଭବନକୁ ଯାଇ ବଂଧୁତ୍ୱପୂର୍ଣ୍ଣ ଆଳାପ-ଆଲୋଚନା କରିବାର ସୌଭାଗ୍ୟ ମଧ୍ୟ ଘଟିଛି। ଅନେକ ସମୟରେ ସେ ବହି ପଢ଼ିବା ପାଇଁ ଓ ରେଫରେନ୍ସ ପାଇଁ ସାହିତ୍ୟ ଅକାଦେମି ଲାଇବ୍ରେରୀକୁ ଆସନ୍ତି। ଓଡ଼ିଆ ବିଭାଗ ଦାୟିତ୍ୱରେ ଥିବା ସ୍ନେହାସ୍ପଦ ଡ. ଅଶୋକ କୁମାର ଚୌଧୁରୀଙ୍କ କୋଠରିରେ ବି ତାଙ୍କ ସହ ଦେଖାହୁଏ। ନିଜ ପ୍ରିୟ ମାଟି ଓଡ଼ିଶାଠାରୁ ଦୂରରେ ଥିଲେ ମଧ୍ୟ ବଂଧୁ ଜେ.ପି. ତାଙ୍କ ମୂଳକୁ ଭୁଲି ନାହାନ୍ତି। ଦିଲ୍ଲୀରେ ଉତ୍କଳୀୟ କଳା ସଂସ୍କୃତି ଓ ସାହିତ୍ୟର ପ୍ରଚାର ଓ ପ୍ରସାର ଦିଗରେ ତାଙ୍କର ଆଗ୍ରହ ଓ ନିଷ୍ଠା ଦେଖି ମୁଁ ମୁଗ୍ଧ ହୋଇଛି। ଓଡ଼ିଶାର ପଟଚିତ୍ର ସଂପର୍କରେ ତାଙ୍କର ଗବେଷଣାତ୍ମକ ଇଂରାଜୀ ପୁସ୍ତକ, ଓଡ଼ିଶୀ କଳାର ମୌଳିକତା ପ୍ରତିପାଦନ କରିବାକୁ ସମର୍ଥ ହୋଇଛି। ମୁଁ ଲକ୍ଷ୍ୟ କରିଛି- ତାଙ୍କ ଭିତରେ ଅଛି କବିର ହୃଦୟ ଓ ଗବେଷକର ଅନୁସନ୍ଧିତ୍ସା। ଏକ ଜିଜ୍ଞାସୁ ବ୍ୟକ୍ତିସତ୍ତା ତାଙ୍କୁ ସବୁବେଳେ ଉଦ୍‌ବେଳିତ କରୁଥାଏ।

୧୯୯୩-୯୪ ମସିହାରେ ବ୍ୟାସକବି ଫକୀରମୋହନଙ୍କ ୧୫୦ତମ ଜୟନ୍ତୀ ଉପଲକ୍ଷେ କେନ୍ଦ୍ର ସାହିତ୍ୟ ଅକାଦେମି ଦିଲ୍ଲୀରେ ଏକ ସେମିନାର ଆୟୋଜନ କରିଥିଲେ। ମୁଁ ସେତେବେଳେ ଫକୀର ମୋହନ ସାହିତ୍ୟ ପରିଷଦର ସଭାପତି ଥାଏ। ମୋତେ ଚିଠି ଆସିଲା, ସେଠାରେ ଫକୀରମୋହନଙ୍କ ସଂପର୍କରେ ଏକ ପ୍ରଦର୍ଶନୀର ବ୍ୟବସ୍ଥା କରିବା ପାଇଁ। ମୁଁ ନ ଯାଇ ପାରି ମୋ ବଡ ପୁଅ ବ୍ୟୋମ ଓ ଜଣେ ଚିତ୍ରଶିଳ୍ପୀ ନିତ୍ୟାନନ୍ଦକୁ ଆବଶ୍ୟକ ଫଟୋ ଓ ଡକ୍ୟୁମେଣ୍ଟ ସହ ଦିଲ୍ଲୀ ପଠାଇଲି। ସେମାନେ ସେଠାରେ ପ୍ରଦର୍ଶନୀର ବ୍ୟବସ୍ଥା କରିଥିଲେ। ସେମାନେ ଫେରିଲା ପରେ ମୋତେ କହିଲେ ଯେ ମୁଁ ପଠାଇଥିବା ଫକୀରମୋହନଙ୍କ ସ୍ୱହସ୍ତ ସ୍ୱାକ୍ଷରିତ ଶେଷ ଇଚ୍ଛାପତ୍ରର ଜେରକ୍ସ କପିଟିକୁ ଜେ.ପି. ପ୍ରଦର୍ଶନୀରେ ଦେଖି ନିଜେ ସାଇତି ରଖିବା ପାଇଁ ନେଇଛନ୍ତି ଏବଂ ମୋତେ ଏକଥା ଜଣାଇ ଦେବାକୁ କହିଛନ୍ତି। ଅବଶ୍ୟ ମୋ

ପାଖରେ ଏବେ ବି ମୂଳ ଇଚ୍ଛାପତ୍ରର ଆଉ ଖଣ୍ଡିଏ ଜେରକ୍ସ କପି ମୁଁ ଯତ୍ନରେ ସାଇତି ରଖିଛି। ଯାହା ଏକାନ୍ତ ଦୁର୍ଲଭ। ଏଥିରୁ ବଂଧୁ ଜଗନ୍ନାଥଙ୍କ ପୁରୁଣାକୁ ଜାଣିବାର ଓ ପୁରୁଣା ତଥ୍ୟକୁ ସଂଗ୍ରହ କରିବାର ଜିଜ୍ଞାସୁ ମନୋଭାବ ସୁସ୍ପଷ୍ଟ।

ମୁଁ 'ଆହ୍ନିକ' କାବ୍ୟଗ୍ରନ୍ଥର ଗୋଟିଏ କବିତାକୁ ଆଜି ପର୍ଯ୍ୟନ୍ତ ମନେ ରଖିଛି, ଯାହା ମୋତେ ଖୁବ୍ ଭଲ ଲାଗିଥିଲା। କବିତାଟିର ଶୀର୍ଷକ 'ବାଲିଆପାଳ'। ଭଲ ଲାଗିବାର କାରଣ ମଧ୍ୟ ରହିଛି। ୧୯୮୪-୮୬ ମସିହାରେ ବାଲେଶ୍ୱର ଜିଲ୍ଲାର ସମୁଦ୍ରକୂଳବର୍ତ୍ତୀ ଶସ୍ୟଶ୍ୟାମଳା ଅଞ୍ଚଳ 'ବାଲିଆପାଳ'ରେ ଯେତେବେଳେ କେନ୍ଦ୍ର ସରକାର କ୍ଷେପଣାସ୍ତ୍ର ଘାଟି ସ୍ଥାପନର ଘୋଷଣା କଲେ, ସେତେବେଳେ ଏହା ବିରୋଧରେ ଯେଉଁ ବିରାଟ ଗଣ ଆନ୍ଦୋଳନ ଗଢ଼ି ଉଠିଥିଲା, ମୁଁ ସେଥିସହ ସଂପୃକ୍ତ ଥିଲି। 'ଗଣତାନ୍ତ୍ରିକ ଅଧିକାର ସୁରକ୍ଷା ସଂଗଠନ' ପକ୍ଷରୁ ମୋ ଆବାହକତ୍ୱରେ ଏକ ସର୍ବଦଳୀୟ କ୍ରିୟାନୁଷ୍ଠାନ କମିଟି ଗଠନ କରାଯାଇ ଆନ୍ଦୋଳନକୁ ସକ୍ରିୟ କରାଯାଉଥିଲା। ସେତେବେଳେ ଏହି ଆନ୍ଦୋଳନକୁ ସମର୍ଥନ କରୁଥିବା ବହୁ କବି, ଲେଖକ ଓ ନାଟ୍ୟକାର ଏହାକୁ ଆଧାର କରି କବିତା, ଗଳ୍ପ, ଉପନ୍ୟାସ ଓ ନାଟକ ରଚନା କରିଥିଲେ। କିନ୍ତୁ ବଂଧୁ ଜେ.ପି. ଭାରତୀୟ ପ୍ରଶାସନିକ ସେବାର ଜଣେ କର୍ତ୍ତବ୍ୟରତ ଅଫିସର ଥାଇ ମଧ୍ୟ ଅତି ସାହସର ସହିତ ବାଲିଆପାଳ କବିତା ଲେଖିପାରିଥିଲେ ନିଜ ବିବେକ ଓ ହୃଦୟର ଆହ୍ୱାନରେ। ଛାତ୍ରାବସ୍ଥାରେ ତାଙ୍କ ଭିତରେ ଥିବା ବାମପନ୍ଥୀ ଚେତନା ଓ ସ୍ୱାଧୀନ ମନୋବୃତ୍ତିର ପରିଚୟ ମୁଁ ପୁଣି ପାଇପାରିଥିଲି ଏହି କବିତାରୁ। ସେ ବାଲିଆପାଳ ଆସି ନ ଥିଲେ ବି ନିଜ କଳ୍ପନା-ଚକ୍ଷୁରେ ଲୋକଙ୍କ ସମସ୍ୟାକୁ ହୃଦୟଙ୍ଗମ କରି କବିତା ମାଧ୍ୟମରେ ସେମାନଙ୍କ ସହ ଏକାତ୍ମ ହୋଇ ପାରିଥିଲେ।

କିଛିବର୍ଷ ତଳେ ହଠାତ୍ ଖଣ୍ଡିଏ ଚିଠି ପାଇଲି- ଭୁବନେଶ୍ୱର Regional College of Educationରେ Poetry Society of India ପକ୍ଷରୁ ଉଦୀୟମାନ କବିମାନଙ୍କୁ ନେଇ ଏକ କର୍ମଶାଳା ଆୟୋଜିତ ହେଉଛି। ମୋତେ ଅନ୍ୟତମ Resource Person ରଖାଯାଇଛି। ମୁଁ ଆଶ୍ଚର୍ଯ୍ୟ ହୋଇଥିଲି, ମୋତେ କେମିତି ରଖାଗଲା? ପରେ ଜାଣିଲି ଏହି ଅନୁଷ୍ଠାନର ସଭାପତି ବଂଧୁ ଜଗନ୍ନାଥ ପ୍ରସାଦ ଦାସ ମୋ ନାଁ ଦେଇଥିଲେ। ସେଠାରେ ତାଙ୍କ ସହ ପୁଣି ଦେଖାହେଲା। ୨/୩ ଦିନ ନବାଗତ/ନବାଗତା କବିମାନଙ୍କ ଗହଣରେ ରହି ହଷ୍ଟେଲରେ ସେମାନଙ୍କ ସହ ମିଶିବାକୁ ଓ ସେମାନଙ୍କୁ ପ୍ରେରଣା ଦେବାକୁ ବଂଧୁ ଅନୁରୋଧ କରିଥିଲେ। ମୁଁ

ତାଙ୍କ ଅନୁରୋଧ ରକ୍ଷା କରି ସେହି ନୂଆ କରି ଲେଖୁଥିବା କବି/କବିୟିତ୍ରୀମାନଙ୍କ ଗହଣରେ ରହି ଅପାର ଆନନ୍ଦ ଲାଭ କରିଥିଲି । ଏହାପରେ ମଧ୍ୟ ଆଉ ୨/୩ ବର୍ଷ ଏଭଳି କର୍ମଶାଳାରେ Resource Person ଭାବେ ଯୋଗ ଦେଇଛି ବନ୍ଧୁ ଜେ.ପି.ଙ୍କ ପ୍ରସ୍ତାବକ୍ରମେ । ନୂଆ ଲେଖୁଥିବା କବିମାନଙ୍କୁ ବାଟ ଦେଖାଇବାରେ Poetry Society of India, ବିଶେଷ କରି କବିବଂଧୁ ଜେ.ପି.ଙ୍କ ଆନ୍ତରିକ ପ୍ରଚେଷ୍ଟା ସ୍ୱାଗତଯୋଗ୍ୟ ।

ଦୁଇଟି ଖଣ୍ଡରେ ପ୍ରକାଶ ପାଇଥିବା ତାଙ୍କ କବିତା ସଂକଳନ 'ପୂର୍ବାପର' ସେ ମୋତେ ଉପହାର ଦେଇଛନ୍ତି ବଂଧୁତାର ନିଦର୍ଶନ ସ୍ୱରୂପ । ମୁଁ ତାଙ୍କୁ ମୋ ଦ୍ୱାରା ପ୍ରତିଷ୍ଠିତ 'ବିଶ୍ୱ-ତାରା ଓଡ଼ିଶା ଗବେଷଣା ଗ୍ରନ୍ଥାଗାର'ରେ ସାଇତି ରଖିଛି ପାଠକ ଓ ଗବେଷକମାନଙ୍କ ପାଇଁ ।

ଆଜକୁ ପ୍ରାୟ ଅର୍ଦ୍ଧଶତାବ୍ଦୀ ତଳେ ମୁଁ ବଂଧୁ ଜେ.ପି.ଙ୍କୁ ଯେପରି ଦେଖିଥିଲି ସମୟର ଦୀର୍ଘ ବ୍ୟବଧାନ ପରେ ଆଜ ବି ତାଙ୍କୁ ସେଭଳି ଦେଖୁଛି । ହୁଏତ ଆଜି ବାର୍ଦ୍ଧକ୍ୟର ଛାପ ପଡ଼ିଛି, ପ୍ରତିଭା ପାକଳ ହୋଇଛି, ସେ ସର୍ବଭାରତୀୟ ପ୍ରତିଷ୍ଠାର ଅଧିକାରୀ ହୋଇଛନ୍ତି, କିନ୍ତୁ ତାଙ୍କ ଚେହେରା ଓ ମିଜାଜରେ ଖୁବ୍ ବେଶି ପରିବର୍ତ୍ତନ ହୋଇନାହିଁ । ଏକ ସଂବେଦନଶୀଳ କବି-ହୃଦୟ ଆଜି ବି ତାଙ୍କୁ ପାଥେୟ କରୁଛି । ଏକ ଜିଜ୍ଞାସୁ ଓ  ଅନୁସନ୍ଧିତ୍ସୁ ମନ ତାଙ୍କ ଭିତରେ ତରଙ୍ଗ ବିକ୍ଷୋଭିତ ସାଗର ଭଳି ଉଦ୍‌ବେଳ ହୋଇଉଠୁଛି । ସର୍ବୋପରି ଏକ ମାନବିକ ଚେତନାବୋଧ ଓ ସାଂସ୍କୃତିକ ଅବବୋଧ ଭିତରେ ସେ ଜୀବନ ଯାପନ କରୁଛନ୍ତି । ମୁଁ ଏହି କବିବଂଧୁଙ୍କୁ ସଶ୍ରଦ୍ଧ ଅଭିନନ୍ଦନ ଜଣାଇ ତାଙ୍କ ଦୀର୍ଘ ଜୀବନ କାମନା କରୁଛି ।

**ସୁନହଟ, ବାଲେଶ୍ୱର-୨**

# ଜଗନ୍ନାଥ ପ୍ରସାଦ ଦାସ କାହିଁକି ଲେଖନ୍ତି

ବିଜୟାନନ୍ଦ ସିଂହ

ଯଶସ୍ୱୀ ସାହିତ୍ୟସ୍ରଷ୍ଟା ଶ୍ରୀ ଜଗନ୍ନାଥ ପ୍ରସାଦ ଦାସ ଏକ ଭିନ୍ନ ଜଗତର ସ୍ରଷ୍ଟା । ସଂସାରର କଥାକୁ ସେ ଯେପରି ଭିନ୍ନ ଦୃଷ୍ଟିକୋଣରୁ ବିଚାର କରିଛନ୍ତି, ତାହା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ତାଙ୍କ ରଚନାରେ ସମକାଳୀନ ସାମାଜିକ ଜୀବନର ବାସ୍ତବ ସ୍ଥିତି ଉନ୍ମୋଚିତ । ଜଗନ୍ନାଥ ପ୍ରସାଦଙ୍କ ବ୍ୟକ୍ତିତ୍ୱର ସାମଗ୍ରିକ ସତ୍ତା ଦ୍ୱାରା ସ୍ରଷ୍ଟାର ଶିଳ୍ପମାନସ ହୋଇଛି ନିୟନ୍ତ୍ରିତ । ସାହିତ୍ୟ କୃତିରେ ସୂକ୍ଷ୍ମାନୁଶୀଳନ ତାଙ୍କ ପ୍ରତିଭାର ଏକ ସ୍ୱଷ୍ଟ ପରିଚୟ । ଅନୁଭୂତି ଜଗତକୁ ସିଧାସଳଖ ଶବ୍ଦ ମାଧ୍ୟମରେ ବର୍ଣ୍ଣନା କରି ଯଥେଷ୍ଟ ପାଠକୀୟ ସ୍ୱୀକୃତି ଲାଭ କରିଛନ୍ତି ।

ଲେଖକମାନଙ୍କର ରଚନାର ରହସ୍ୟ ବା ଲେଖିବାର କାରଣ ଜାଣିବା ପାଇଁ ପାଠକ ମନରେ ଜିଜ୍ଞାସା ସୃଷ୍ଟି ହେବା ସ୍ୱାଭାବିକ । ଲେଖକ ଗୋଟିଏ ସମୟର କଥା କେବଳ କହେ ନାହିଁ- ଭବିଷ୍ୟତ ପାଇଁ ସ୍ୱପ୍ନ ଦେଖେ, ଭବିଷ୍ୟତକୁ ଦେଖି କାର୍ଯ୍ୟ ଆରମ୍ଭ କରେ । କାରଣ ସ୍ରଷ୍ଟା ସାମାଜିକ ଚେତନାର ରୂପକାର । ତେବେ ଲେଖକଟିଏ କାହିଁକି ଲେଖନୀ ଚାଳନା କରେ ? କାହିଁକି ଏକ ଭିନ୍ନ ଜଗତ ସୃଷ୍ଟି କରି ପାଠକମାନଙ୍କୁ ବିମୋହିତ କରି ଥାଏ- ଏପରି ପ୍ରଶ୍ନର ଉତ୍ତର ପାଇଁ ୧୯୮୪ ମସିହାରେ 'ମୁଁ କାହିଁକି ଲେଖେ' ଗ୍ରନ୍ଥର ସଂଯୋଜନା ଓ ସଂପାଦନା କରାଯାଇଥିଲା । ଏହାର ପୂର୍ଣ୍ଣାଙ୍ଗ

ସଂକଳନ କାର୍ଯ୍ୟ ୨୦୦୫ରେ ସମାପ୍ତ ହୋଇଥିଲା। ଏହି ପ୍ରସଙ୍ଗରେ ଆମ ସାହିତ୍ୟର ଖ୍ୟାତନାମା ସହିତ୍ୟସ୍ରଷ୍ଟା ଜଗନ୍ନାଥ ପ୍ରସାଦ ଦାସଙ୍କ ସମେତ ଓଡ଼ିଆ ସାହିତ୍ୟର ପ୍ରସିଦ୍ଧ ଲେଖକମାନଙ୍କୁ 'ମୁଁ କାହିଁକି ଲେଖେ' ଶୀର୍ଷକ ଲେଖାଟିଏ ଲେଖିବା ପାଇଁ ମୁଁ ଅନୁରୋଧ କରିଥିଲି। ମୋର ବିନମ୍ର ଆବେଦନରେ ସତୁରି ଜଣ ସ୍ରଷ୍ଟା ସେମାନଙ୍କ ଜୀବନାଦର୍ଶ ତଥା ସାରସ୍ୱତ ଚିନ୍ତାର ମୂଳ ଲକ୍ଷ୍ୟ ସଂପର୍କରେ ଲେଖା ପଠାଇଥିଲେ । ତାହା ମଧ୍ୟ ସଂକଳିତ ହୋଇ ପ୍ରକାଶ ପାଇଛି । 'ମୁଁ କାହିଁକି ଲେଖେ' ଗ୍ରନ୍ଥରେ। କିନ୍ତୁ ଏହି ବିଷୟ ତିନିଜଣ ବରେଣ୍ୟ ସ୍ରଷ୍ଟା ସାହିତ୍ୟସାଧକ ମନୋଜ ଦାସ, ଜଗନ୍ନାଥ ପ୍ରସାଦ ଦାସ ଓ ସୂର୍ଯ୍ୟକାନ୍ତ ଦାସ ଭିନ୍ନ ମତ ପୋଷଣ କରିଥିଲେ। ଜଗନ୍ନାଥ ପ୍ରସାଦ ଦାସଙ୍କ ଉତ୍ତର ଥିଲା ଅହଂଶୂନ୍ୟ, ନିର୍ଭୀକ ଓ ସ୍ୱଚ୍ଛ। ତାଙ୍କର ସେଦିନର ମତ ଏଠାରେ ପ୍ରକାଶ କରାଯାଇପାରେ। ସେ ଲେଖିଥିଲେ- 'ମୁଁ କାହିଁକି ଲେଖେ- ମୁଁ ଏ ବିଷୟରେ ନିଜକୁ କେବେ ପ୍ରଶ୍ନ କରି ନାହିଁ ବା ପ୍ରଶ୍ନ କରିବାକୁ ଆବଶ୍ୟକ ମନେ କରି ନାହିଁ। ଯଦି ମତେ କିଏ ଏଭଳି ପ୍ରଶ୍ନ କରେ, ମୋର ସହଜ ଉତ୍ତର, ଲେଖିବା ପାଇଁ ଇଚ୍ଛା ହେବାରୁ ମୁଁ ଲେଖେ। ତେଣୁ ଏ ବିଷୟରେ ମୋର ଆଉ କୌଣସି ଲେଖିବାର ନାହିଁ। ଲକ୍ଷ୍ୟଣୀୟ ଯେ ଏଭଳି ପ୍ରଶ୍ନ କେବଳ ଲେଖକମାନଙ୍କୁ ପଚରା ଯାଇଥାଏ, ଅନ୍ୟ କଳାକାରମାନେ କେହି ମୁଁ କାହିଁକି ଚିନ୍ତା କରେ, ନାଚେ, ଗାଏ ବା ଅଭିନୟ କରେ ବିଷୟରେ ଲେଖା ଲେଖିବାର ମୁଁ ଜାଣେ ନାହିଁ। ଆପଣଙ୍କ ଅନୁରୋଧ ରକ୍ଷା କରିପାରୁ ନଥିବାରୁ ମୋତେ କ୍ଷମା କରିବେ ବୋଲି ଆଶା।'

ଜଗନ୍ନାଥ ପ୍ରସାଦଙ୍କ ହୃଦୟର ପ୍ରତିଫଳନ ସାରସ୍ୱତ ରଚନାରେ ଘଟିଛି। ଜଗନ୍ନାଥ ପ୍ରସାଦଙ୍କ ସୌନ୍ଦର୍ଯ୍ୟ ଚେତନା ଓ କଳାତ୍ମକ ଦୃଷ୍ଟିଭଙ୍ଗୀ ସତରେ ବିଚିତ୍ର। ସାହିତ୍ୟ ରଚନା ତାଙ୍କର ବିଳାସ ନୁହେଁ, ବରଂ ପ୍ରବୃତ୍ତି, ଚିନ୍ତା ଓ ଭାବନାର ପୂର୍ଣ୍ଣାଙ୍ଗ ମାନଚିତ୍ର। ଜଗନ୍ନାଥ ପ୍ରସାଦ ଆମ ସାହିତ୍ୟ କାହିଁକି, ଭାରତୀୟ ସାହିତ୍ୟରେ ତାଙ୍କର ଅନବଦ୍ୟ ଅବଦାନ ପାଇଁ ଚିର ସ୍ମରଣୀୟ।

**ଯଶୁଆପୁର, ମାହାଙ୍଍ଗା, କଟକ**

# ଡ. ଜେପି ଓ ସନ୍ଥ ହରିହର: ଅନ୍ତରଙ୍ଗ ମୁହୂର୍ତ୍ତ

ଓମ୍ ପ୍ରକାଶ ଅଗ୍ରୱାଲା

ଡଃ. ଜେ.ପି. ଦାସ, ଆଇ.ଏ.ଏସ୍. (ଅବସରପ୍ରାପ୍ତ) ଏବେ ଦିଲ୍ଲୀରେ ରହନ୍ତି। ଏତିକି ପରିଚୟ ତାଙ୍କ ପାଇଁ ଯଦିଓ ଆପଣାଆପଣି ଲୋକଙ୍କ ପାଇଁ ଯଥେଷ୍ଟ, ତଥାପି ତାଙ୍କର ମହନୀୟ ପ୍ରତିଭା ସମଗ୍ର ଓଡ଼ିଆ ଜାତିକୁ ବିଶ୍ୱ ଦରବାରରେ ପରିଚିତି ଆଣିବାରେ ସହାୟକ ହୋଇଛି। କାରଣ ସେ ଜଣେ ଦକ୍ଷ କଳାକାର, ଉଚ୍ଚକୋଟୀର ଲେଖକ ଏବଂ ମାନବବାଦୀ ସୃଜନଶୀଳ କବି।

ଡଃ. ଜଗନ୍ନାଥ ପ୍ରସାଦ ଦାସଙ୍କ କାବ୍ୟିକ ଉଦ୍‌ଗୀରଣରେ ରହିଛି- ମାନବିକତାର ମଧୁର ଝଙ୍କାର, ପ୍ରୀତି ଓ ପ୍ରଣୟର ନିର୍ବିକାର ମୟୁରୀ ନୃତ୍ୟର ସମ୍ମୋହନ ନାଦ ଏବଂ ସାମୟିକ ଭାବର ବୈପ୍ଲବିକ ପରିବର୍ତ୍ତନ ପାଇଁ ଉଦ୍‌ବେଳନର ସ୍ୱର।

ସେହିପରି ଡଃ. ଦାସଙ୍କ ପ୍ରବନ୍ଧରେ ରହିଛି- ନୂତନ ତତ୍ତ୍ୱ ଏବଂ ଜୀବନର ବାସ୍ତବତାର ନିର୍ବିବାଦୀୟ ଅଭିବ୍ୟକ୍ତି, ଯା' ତାଙ୍କର 'ଦେଶ କାଳ ପାତ୍ର' ସର୍ଜନାରେ ବେଶ ପରିସ୍ଫୁଟ। ସାଂସ୍କୃତିକ ଚେତନାକୁ ସମୃଦ୍ଧ କରିବାରେ ଚିତ୍ରକଳାର ପ୍ରମୁଖ ଭୂମିକା ରହିଛି, ଏହାର ସତ୍ୟତା ପ୍ରତିପାଦନ କରିଛନ୍ତି ଡଃ. ଜଗନ୍ନାଥ ପ୍ରସାଦ ଦାସ। ପ୍ରେମ ଓ ପ୍ରଣୟ, ଚିନ୍ତା ଓ ଚେତନା, ମାନବିକତାର ସୁର ତାଙ୍କ ଚିତ୍ରକଳାରେ ବେଶ୍ ସୁନ୍ଦର ଭାବରେ ପରିସ୍ଫୁଟ। ସେଥିପାଇଁ ସେ ସମଗ୍ର ଦେଶରେ ସୁପରିଚିତ।

କିନ୍ତୁ ଡଃ. ଜଗନ୍ନାଥ ପ୍ରସାଦ ଦାସଙ୍କ କଳା, ସାହିତ୍ୟ ଓ ସଂସ୍କୃତିର ମଣିଷ ପଣିଆର ହୃଦୟ ଭିତରେ ରହିଛି- ସେବା କରିବାର ଏକ ଆଲୌକିକ ପ୍ରତିଭା, ଯାହା ବହୁତ କମ୍ ଲୋକ ଜାଣିଥିବେ, ବୋଧହୁଏ।

ଜଗନ୍ନାଥ ବାବୁ ପିଲାବେଳେ ମାତ୍ର ୧୨ବର୍ଷ ବୟସରେ ବାଣପୁରଠାରେ ତାଙ୍କ ସହପାଠୀ ହରିହର ରାମଙ୍କ ସହ ମିଶି ନେହେରୁ ସେବା ସଂଘ ଗଠନ କରିଥିଲେ ଏବଂ ଗାଁ ସଫେଇଠାରୁ ଆରମ୍ଭ କରି ମୁଷ୍ଟିଭିକ୍ଷାକରି ଦୀନ ଦରିଦ୍ର ମଣିଷର ସେବାରେ ନିଜକୁ ହଜାଇ ଦେଇଥିଲେ। ଏହା ହିଁ ତାଙ୍କୁ ପରବର୍ତ୍ତୀ ସମୟରେ ସରକାରୀ ଉଚ୍ଚ ପଦବୀ ସତ୍ତ୍ୱେ ଗରିବ ମଣିଷର ସାଥୀ ହେବାକୁ ପ୍ରୋତ୍ସାହିତ କରିଥିଲା, ଏଥିରେ କୌଣସି ସନ୍ଦେହ ନାହିଁ।

ବାଲ୍ୟବନ୍ଧୁ ହରିହର ରାମଙ୍କ ଦ୍ୱାରା ପ୍ରତିଷ୍ଠିତ ନେହେରୁ ସେବା ସଂଘର ଉନ୍ନତି ପାଇଁ ଜଗନ୍ନାଥ ଦାସଙ୍କ ଉଦ୍ୟମ ଥିଲା ଯଥେଷ୍ଟ। ସେ ସଦାବେଳେ ଦିଲ୍ଲୀରେ ହରିହର ରାମଙ୍କୁ ସଂଘର ଅନୁଦାନ ପ୍ରାପ୍ତ କରାଇବାରେ ସହାୟତା କରୁଥିଲେ।

ନେହେରୁ ସେବା ସଂଘ ଦ୍ୱାରା ପରିଚାଳିତ ବିଭିନ୍ନ କାର୍ଯ୍ୟକ୍ରମ ଏବଂ ଶିଶୁ ଓ ମହିଳା କଲ୍ୟାଣ ସେବା କାର୍ଯ୍ୟ ନିମନ୍ତେ ଜଗନ୍ନାଥ ବାବୁଙ୍କର ନିଷ୍ଠାପର ସହାୟତା ପାଇଁ ସେ ହରିହର ରାମଙ୍କର ଅତି ଆପଣାର ହୋଇ ଯାଇଥିଲେ।

ଯେତେବେଳେ ଦିଲ୍ଲୀଠାରେ ତାଙ୍କ ବାଲ୍ୟବନ୍ଧୁ ହରିହରଙ୍କ ସହ ଭେଟ ହୁଏ, ସେତେବେଳେ ତାଙ୍କ ଭିତରେ ଏକ ଅଦ୍‌ଭୁତ ଶିହରଣ ସୃଷ୍ଟି ହେବାର ମୁଁ ଲକ୍ଷ୍ୟ କରିଛି। କାରଣ, କାମ ତ କାମ, ତା' ମଧ୍ୟରେ ହରିହର- ଜଗନ୍ନାଥଙ୍କର ମିଳନରେ ଯେମିତି ଥାଏ ସାତ୍ତ୍ୱିକ ମମତାରେ ପରିପୂର୍ଣ୍ଣ ପ୍ରେମର ଉଚ୍ଛ୍ୱାସ।

ଏଠି ଲେଖିବା ଉଚିତ୍ ହେବ ଯେ, ହରିହର ରାମ ଥିଲେ ଜଣେ ସନ୍ୟାସୀ। ସେ ବାଲ୍ୟକାଳୁ ଦେବ-ଭକ୍ତିରେ ନିଜକୁ ଉତ୍ସର୍ଗ କରି, ସାମାଜିକ ବନ୍ଧନରେ ନିଜକୁ ଆବଦ୍ଧ କରି ରଖିବାର ସ୍ୱପ୍ନରେ ମସଗୁଲ ନ ହୋଇ, ଅବିବାହିତ ଜୀବନ ଯାପନ କରିବା ସଂଗେ ସଂଗେ ଗେରୁଆ ରଂଗର ଖଦଡ଼ ବସ୍ତ୍ର ପରିଧାନ ପୂର୍ବକ ସମଗ୍ର ଭାରତବର୍ଷ ଭ୍ରମଣ କରି ତୀର୍ଥସ୍ଥାନମାନଙ୍କରେ ଦୀର୍ଘ ସମୟ ଅତିବାହିତ କରି, ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ପରମାଚାର୍ଯ୍ୟ ଶ୍ରୀଶ୍ରୀ ସ୍ୱାମୀ ଚନ୍ଦ୍ରଶେଖରେନ୍ଦ୍ର ସରସ୍ୱତୀଙ୍କର ଶିଷ୍ୟତ୍ୱ ଗ୍ରହଣ କରି ଗୁରୁଙ୍କ ପରାମର୍ଶ କ୍ରମେ ଲୋକସେବାରେ ବ୍ରତୀହୋଇ ନିଜର ସୁଖ, ସ୍ୱାଚ୍ଛନ୍ଦ୍ୟସବୁକୁ ଜଳାଂଜଳି ଦେଇ ଓଡ଼ିଶାର ଗରିବ ଓ ବୁଭୁକ୍ଷୁ ମଣିଷର ଉତ୍‌ଥାନ ପାଇଁ କାର୍ଯ୍ୟ କରିବାକୁ ନିଜକୁ ସମର୍ପି ଦେଇଥିଲେ।

ଡଃ. ଜେ.ପି.ଙ୍କ ବାଲ୍ୟବନ୍ଧୁ ହରିହର ରାମ ଓଡ଼ିଶା ବାହାରେ ମୁଖ୍ୟତଃ ଦିଲ୍ଲୀଠାରେ 'ସ୍ୱାମୀଜୀ' ଭାବରେ ଏବଂ ଓଡ଼ିଶାରେ 'ସନ୍ଥ' ଭାବରେ ସୁପରିଚିତ ଥିଲେ। ତନ୍ତ୍ର ସାଧନାରେ ମଧ୍ୟ ତାଙ୍କର ଅଲୌକିକ ପ୍ରତିଭା ସମସ୍ତଙ୍କୁ ଚମତ୍କୃତ କରିଥିଲା। ଭାରତୀୟ ସଂସ୍କୃତିର ଆଧାତ୍ମିକ ସାରମର୍ମକୁ ସେ ଯେମିତି ସ୍ୱଷ୍ଟ ଓ ପ୍ରାଞ୍ଜଳ ଭାବରେ ବ୍ୟକ୍ତ କରୁଥିଲେ, ତାହା କ୍ୱଚିତ୍ ସାଧୁସନ୍ଥଙ୍କଠାରେ ଦେଖିବାକୁ ମିଳିଥାଏ।

ସେଇଥିପାଇଁ ସନ୍ଥ ହରିହରଙ୍କ ସହ ଡଃ. ଜେ.ପି.ଙ୍କର ଅନ୍ତରଙ୍ଗ ବନ୍ଧୁତା ଥିଲା, ଏଥିରେ ସନ୍ଦେହ ନାହିଁ। ଯେତେବେଳେ ସନ୍ଥ ହରିହର, ଡଃ. ଜେ.ପି.ଙ୍କୁ କୌଣସି ସହାୟତା ପାଇଁ ପତ୍ରଟିଏ ଲେଖନ୍ତି, ସେତେବେଳେ ଡଃ. ଜେ.ପି.ଙ୍କ ପ୍ରତ୍ୟୁତ୍ତର ମିଳିବା ପୂର୍ବରୁ ସନ୍ଥଙ୍କ କାର୍ଯ୍ୟ ଫଳପ୍ରଦ ହୋଇଯାଇଥାଏ। କାରଣ ଡଃ. ଜେ.ପି.ଙ୍କ ପଦୁଟିଏ କଥା କାଉଁରୀ କାଠି ଭଳି କାମ କରିଥାଏ।

ପ୍ରାୟ ୭/୮ ବର୍ଷ ତଳେ ଦିନେ ଡଃ. ଜେ.ପି.ଙ୍କ ସହ ସନ୍ଥ ହରିହର ବାର୍ତ୍ତାଳାପ କରୁଥିବା ବେଳେ, ଡଃ. ଜେ.ପି. ତାଙ୍କ ବନ୍ଧୁଙ୍କୁ 'Trees for Life' (ଜୀବନ ପାଇଁ ବୃକ୍ଷ) ସଂସ୍ଥାର ମୁଖ୍ୟ ଶ୍ରୀ ବଲବୀର ମାଥୁରଙ୍କ ସହ ଯୋଗାଯୋଗ କରିବାକୁ ପରାମର୍ଶ ଦେଲେ। ସନ୍ଥ କହିଲେ, 'ମୁଁ କ'ଣ ତାଙ୍କୁ ଜାଣେ ?' ଡଃ. ଦାସ କହିଲେ, 'ମୁଁ କେଇଦିନ ଭିତରେ ତାଙ୍କୁ ନେଇ ବାଣପୁର ଯିବି।'

'ଜୀବନ ପାଇଁ ବୃକ୍ଷ'ର ମୁଖ୍ୟ ଶ୍ରୀ ବଲ୍‌ବୀର ମାଥୁର ଆହ୍ଲାବାଦର ବାସିନ୍ଦା ହୋଇଥିଲେ ମଧ୍ୟ ଡଃ. ଜେ.ପି.ଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ। ଏଣୁ ଜେ.ପି. ମଧ୍ୟ ଉକ୍ତ ସଂସ୍ଥା ସହ ଗଭୀର ଭାବରେ ଜଡିତ ହୋଇ ଯାଇଥିଲେ। ଦିନେ ଉଦିତ ସୂର୍ଯ୍ୟର ମଧୁର କିରଣ ମଧ୍ୟରେ ଡଃ. ଦାସ ଓ ଶ୍ରୀ ବଲବୀର ମାଥୁର ଜୀ ବାଣପୁର ଆସିଥିଲେ। ସେମାନେ ସନ୍ଥ ହରିହରଙ୍କ ସହ ବେଶ୍ ଜମାଣିଆ କଥାବାର୍ତ୍ତା ହେଲେ। ସଂସ୍ଥାର ଆବାସିକ କାର୍ଯ୍ୟକ୍ରମ ସବୁ ତନ୍ନ ତନ୍ନ ଭାବରେ ଅଧ୍ୟୟନ କରିଗଲେ ଏବଂ ବଲବୀର ମାଥୁରଙ୍କ ମୁହଁରେ ପ୍ରୀତିର ହସ, ଡଃ. ଦାସଙ୍କୁ ବେଶ୍ ଆତ୍ମସନ୍ତୋଷ ଦେଇଥିଲା। ସନ୍ଥ ହରିହର ରାମଙ୍କୁ ବଲବୀର ମାଥୁର ବେଶ ନିଜର କରି ନେଇଥିଲେ। ପରେ ତାଙ୍କ ସଂସ୍ଥା ପକ୍ଷରୁ ସହାୟତା ଦେବାକୁ ପ୍ରତିଶ୍ରୁତି ଦେବା ସହ ୫୦ ଜଣ ଅନ୍ତେବାସୀ ପିଲାଙ୍କୁ ପୋଷ୍ୟ ସନ୍ତାନ ଭାବରେ ଗ୍ରହଣ କରି ଆର୍ଥିକ ସହାୟତାର ପ୍ରତିଶ୍ରୁତି ଦେଲେ।

ଆଧୁନିକ ଯୁଗରେ କମ୍ପ୍ୟୁଟରର ଅବାଧ କାରବାର। ଚିଠିପତ୍ର ଯୁଗ ଆଉ ନାହିଁ। ସବୁ ଇ-ମେଲ୍‌ରେ ଚାଲିଛି। ବଲବୀର ମାଥୁରଜୀ ଚିଠି ଲେଖନ୍ତି ଡଃ. ଜେ.ପି.ଙ୍କୁ ଇ-ମେଲ୍‌ରେ, ସେ ସନ୍ଥ ହରିହରଙ୍କୁ ପଠାନ୍ତି ଡାକ ଯୋଗେ ବା କହି ଦିଅନ୍ତି

